# ଅନୁଭୂତି ଚିକିତ୍ସା



ସଗ୍ରାହକ ଓ ପ୍ରକାଶକ

**କବିରାଜ ଶ୍ରୀ ବୈଦ୍ୟନାଥ ଶର୍ମା**

ବୈଦ୍ୟଭୂଷଣ ।

**ସଂଜୀବନୀ ଔଷଧାଳୟ ।**

ପୋ:—ବ୍ରହ୍ମପୁର

ଜି: ଗଞ୍ଜାମ



(ନୂତନ ସଂସ୍କରଣ)



ମୁଦ୍ରାକର—ଶ୍ରୀ ଶ୍ୟାମସୁନ୍ଦର ପାଢ଼ୀ

**ଶାରଦା ପ୍ରେସ୍,**

ବ୍ରହ୍ମପୁର (ଗଞ୍ଜାମ)

୧୯୬୪

ମୂଲ୍ୟ ୪ ୦ ୟ    ବାରଅଣା ମାତ୍ର



କବିରାଜ:—

ଶ୍ରୀ ବୈଦ୍ୟନାଥ ଶର୍ମା

ବୈଦ୍ୟଭୂଷଣ

# ଭୂମିକା



ଆୟୁର୍ବେଦୀୟ ଚିକିତ୍ସା ପଦ୍ଧତି ଭାରତରେ ପ୍ରାଚୀନ କାଳରୁ ଆଜି ପର୍ଯ୍ୟନ୍ତ ଚଳି ଆସୁଅଛି, ଅନେକ ବୈଦ୍ୟ ବଂଶପରଂପରାକ୍ରମରେ ଏହି ପଦ୍ଧତିକୁ ଅକ୍ଷୁଣ୍ଣ ଭାବରେ ରକ୍ଷାକରି ଆସୁଅଛନ୍ତି । ଆମ୍ଭର ପୂର୍ବପୁରୁଷଗଣ ଏହାକୁ ବଂଶଗତ ବିଦ୍ୟା ବୋଲି ଭାବି ନାନା ବାଧାବିଘ୍ନସତ୍ତ୍ୱେ ନିଜର ଚିକିତ୍ସକତ୍ୱ ବଜାୟ ରଖି ମଞ୍ଜୁଷା ଓ ତଇଲା ଏହି ଦୁଇ ରାଜ୍ୟରେ ରାଜବୈଦ୍ୟ ସ୍ୱରୂପ ନାନା ଉପାଧି ମଣ୍ଡିତ ହୋଇ ପୂଜା ପାଉଥିଲେ । ରାଷ୍ଟ୍ରଦତ୍ତ ବୈଦ୍ୟ ଇନାମ ଭୂସମ୍ପତ୍ତି ବହୁ ସ୍ଥାନରେ ଆମ୍ଭ ପୂର୍ବପୁରୁଷଗଣ ପାଇଥିଲେ । ତାହା ଆଜି ପର୍ଯ୍ୟନ୍ତ ଆମ୍ଭେମାନେ ଭୋଗକରି ଆସୁଅଛୁଁ । ସେମାନେ ତାଳପତ୍ର ପୁସ୍ତକରେ କେତେ ତତ୍ତ୍ୱ ରଖି ଯାଇଅଛନ୍ତି, ତାହାର ଇୟତ୍ତା କରି ହେବନାହିଁ । ଆମ୍ଭର ପ୍ରପିତାମହ ୰ ଚୈତନ୍ୟ ପୁରୋହିତ ସେହି ପ୍ରାଚୀନ ତାଳପତ୍ର ପୁସ୍ତକମାନଙ୍କରୁ ଯେଉଁ ବୈଦ୍ୟରତ୍ନାକର ନାମକ ଗ୍ରନ୍ଥ ଲେଖିଯାଇଅଛନ୍ତି ତାହା ଚକ୍ରଦତ୍ତ, ଭାବପ୍ରକାଶ, ଭୈଷଜ୍ୟ ରତ୍ନାବଳୀ ଏବଂ ଅଭିନବ ଚିନ୍ତାମଣି ଗ୍ରନ୍ଥ ଅପେକ୍ଷା କେତେ ଯେ ବୃହତ୍ ଗ୍ରନ୍ଥ ତାହା ଦର୍ଶକମାନେ ଉପଲବ୍ଧି କରୁଅଛନ୍ତି । ମୁଁ ସେହି ବଂଶର ଜଣେ ବୈଦ୍ୟ । ସେମାନଙ୍କର ପାଣ୍ଡିତ୍ୟ ବା ପ୍ରତିଭା ମୋହର ତିଳେମାତ୍ର ନାହିଁ । ତଥାପି ମଧୁମକ୍ଷିକା ନାନାପୁଷ୍ପରୁ ସାର ସଂଗ୍ରହ କଲାପରି ମୁଁ ନିଜେ ଚିକିତ୍ସା ବ୍ୟବସାୟ ଦ୍ୱାରା ବହୁ ଅନୁଭୂତି ପରେ ଏହି **"ଅନୁଭୂତ ଚିକିତ୍ସା,"** ପୁସ୍ତକ ଖଣ୍ଡିକ ସଙ୍କଳନ କରିଅଛି ।

କେତେ ଗୋଟି ମୁଷ୍ଟିଯୋଗ ଛଡ଼ା ଏଥିରେ ମୋହର ନୂତନତ୍ୱ କିଛିନାହିଁ । ପ୍ରାଚୀନ ପୁସ୍ତକମାନଙ୍କରୁ ଯେଉଁ ଔଷଧ ମୁଁ ବାଛିବାର

ବ୍ୟବହାର କରି ଚିକିତ୍ସାବିଦଗରେ ଯଥେଷ୍ଟ ଫଳ ପାଇଅଛି ସେଗୁଡ଼ିକ କେବଳ ଏଥିରେ ସନ୍ନିବେଶିତ କରିଅଛି । ବହୁତ ଔଷଧ ଓ ପୁଷ୍ଟି ପାକ ପ୍ରଣାଳୀ ଅତ୍ୟୁତ୍କୃଷ୍ଟ ଥିଲେ ହେଁ ଗ୍ରନ୍ଥ ବାହୁଲ୍ୟ ଭୟରେ ତାହା ଏଥିରେ ଲେଖିନପାରି ଦୁଃଖିତ ।

ଏହି ଯେଉଁ ଗ୍ରନ୍ଥଟିକୁ ଲେଖିବାର ଉଦ୍ଦେଶ୍ୟ ଏହି ଯେ ସାଧାରଣଙ୍କ ପକ୍ଷରେ ଖଣ୍ଡିଏ ପକେଟ୍ ପୁସ୍ତକ ସ୍ୱରୂପ ଏହା କାର୍ଯ୍ୟ କରିବ । ବହୁତ ସମୟରେ ବଡ଼ ବଡ଼ କବିରାଜମାନେ ମଧ୍ୟ ଚିକିତ୍ସା ବିଷୟରେ ବଡ଼ ୨ ଗ୍ରନ୍ଥ ଆଲୋଡ଼ନ କରିବାରେ ବହୁକଷ୍ଟ ଅନୁଭବ କରିଥାନ୍ତି । ଅତଏବ ଖଣ୍ଡିଏ ଯେଉଁ ବହି ଚିକିତ୍ସା ବିଷୟରେ ବୃହତ୍ତର ଗ୍ରନ୍ଥମାନଙ୍କର ସଂକ୍ଷିପ୍ତ ସାରପରି କାର୍ଯ୍ୟ କରିବ ବୋଲି ଏ କ୍ଷୁଦ୍ର ପୁସ୍ତକ ଖଣ୍ଡିକ ପ୍ରଣୟନ କଲି । ଆଜକୁ ବ ୨୫ ର୍ଷ କାଳ ଚିକିତ୍ସା କରି ମୁଁ ଯେଉଁ ଅନୁଭୂତି ପାଇଅଛି ସେ ସମସ୍ତ ବିଷୟ କେବଳ ଏଥିରେ ସନ୍ନିବେଶିତ କରିଅଛି ।

ସହୃଦୟ ପାଠକବୃନ୍ଦ ଏହାକୁ ଚିକିତ୍ସା କ୍ଷେତ୍ରରେ ବ୍ୟବସ୍ଥା ଦେଲାବେଳେ ଏହାକୁ ପକେଟ୍ ଚିକିତ୍ସା ପୁସ୍ତକ ସ୍ୱରୂପ ଯଦି ବ୍ୟବହାର କରିବେ ତେବେ ମୋର ବିପୁଳ ପରିଶ୍ରମ ସାର୍ଥ ମନେକରି କୃତକୃତ୍ୟ ହେବି ।

ଚିକିତ୍ସାର ସୁବିଧା ସକାଶେ ଏଥିରେ ପ୍ରଥମରେ ରୋଗମାନଙ୍କର ସଂକ୍ଷିପ୍ତ ପରିଚୟ ଓ ସଂକ୍ଷିପ୍ତ ନିଦାନ ଦେଇ ସଙ୍ଗେ ୨ ସେହି ସେହି ରୋଗମାନଙ୍କରେ ଠିକ୍ ଉପକାର ହେଉଥିବା ଭଳି କେତେକ ପାଚନ ଓ ମୁଷ୍ଟିଯୋଗ ଦେଇଅଛି । ପରେ ଶାସ୍ତ୍ରୀୟ ନାମରେ ମୋର ପରୀକ୍ଷିତ ଔଷଧ ଗୁଡ଼ିକ ଦେଇଅଛି ଏବଂ ଅକାରାଦି କ୍ରମରେ ଔଷଧ ଯୋଗଗୁଡ଼ିକର ପ୍ରସ୍ତୁତ ପ୍ରଣାଳୀ ବିଶଦ ରୂପେ ଲେଖିଅଛି । ଯୋଗଗୁଡ଼ିକରେ ପ୍ରଯୁକ୍ତ

ଦେବା ପଦାର୍ଥ ଗୁଡ଼ିକର ଯାହା ୨ ଶୋଧନ ମାରଣ କରାଯିବା ବିଧି, ସେଗୁଡ଼ିକ ପାଠକମାନେ ଅନ୍ୟାନ୍ୟ ଗ୍ରନ୍ଥ ସାହାଯ୍ୟରେ ସମ୍ପାଦନ କରିବେ । ଶୋଧନମାରଣାଦି ଚିକିତ୍ସା ବିଷୟକ ସମସ୍ତ ଅଙ୍ଗୋପାଙ୍ଗ ଏହି ଛୋଟ ବହି ଖଣ୍ଡିକରେ ରଖିବା ସୁବିଧାଜନକ ନୁହେଁ ବୋଲି ରଖିପାରିନାହୁଁ ।

ପ୍ରକାଶକ

**ଶ୍ରୀ ବୈଦ୍ୟନାଥ ଶର୍ମ୍ମା**



# ମନ୍ତବ୍ୟ



କବିରାଜ ଶ୍ରୀ ବୈଦ୍ୟନାଥ ଶର୍ମ୍ମା ବୈଦ୍ୟଭୂଷଣଙ୍କର 'ଅନୁଭୂତଚିକିତ୍ସା' ର ପାଣ୍ଡୁଲିପିଟି ମୁଁ ଆମୂଳାନ୍ତ ପାଠ କରିଅଛି । ଏଥିରେ କବିରାଜ ମହାଶୟଙ୍କର ସ୍ୱାନୁଭବସିଦ୍ଧ ମୁଷ୍ଟିଯୋଗ ଓ ଔଷଧଗୁଡ଼ିକ ଅତ୍ୟନ୍ତ ଉପାଦେୟ ଅଟେ । ଗ୍ରନ୍ଥର ଉପାଦେୟତା ଉପଲବ୍ଧି କଲେ ବୁଝାଯାଏ ଯେ, ଏହାର ଲେଖା ସମ୍ପୂର୍ଣ୍ଣ ନୂତନ ଧରଣ । ଏଥିରେ ଥିବା ସଂକ୍ଷିପ୍ତ ନିଦାନ ଓ ଔଷଧଗୁଡ଼ିକ ଆୟୁର୍ବେଦରେ ବହୁକାଳ ଚିକିତ୍ସା, ଉଦ୍ୟମ ଓ ଉତ୍ସାହର ପରିଚୟ ।

ଆୟୁର୍ବେଦ ଅଭିଜ୍ଞାନଭିଜ୍ଞ ଯେ କୌଣସି ବ୍ୟକ୍ତିପକ୍ଷରେ ସମସ୍ତପ୍ରକାର ରୋଗର ଚିକିତ୍ସା କରିବା ବିଷୟରେ ଏହା ଉପଯୋଗୀ ହେବ ଏଥିରେ ଲେଶମାତ୍ର ସନ୍ଦେହ ନାହିଁ । ଏହିପୁସ୍ତକ ଖଣ୍ଡିକ ଗୃହରେ ଥିଲେ ଗୃହସ୍ଥ ଅନ୍ୟ ଚିକିତ୍ସକଙ୍କର ହାବସ୍ତ ହେବନାହିଁ ବୋଲି ମୋର ବିଶ୍ୱାସ ।

ଅହୁରିମଧ ଚିକିତ୍ସାବ୍ୟବସାୟୀମାନଙ୍କ ପକ୍ଷରେ ଏହାର ଉପାଦେୟତା କହିଲେ ନସରେ । ଯେଉଁମାନେ ବୃହତ୍ ଆୟୁର୍ବେଦ ଗ୍ରନ୍ଥ ଅଧ୍ୟୟନ କରି ଚିକିତ୍ସା କରୁଅଛନ୍ତି ସେମାନେ ଧୂବା ରୋଗରେ ବ୍ୟବସ୍ଥା ଦେବାନିମନ୍ତେ ଅନେକ ସମୟରେ ଇତସ୍ତତ ହୁଅନ୍ତି, ସୁତରାଂ ସେମାନଙ୍କ ହାତରେ ଏ ବହିରୁ ଖଣ୍ଡିଏ ଥିଲେ ରୋଗବ୍ୟବସ୍ଥା ସମ୍ବନ୍ଧରେ ଅନେକ ଅଂଶରେ ସାହାଯ୍ୟ ଓ ସୁବିଧା ମିଳିପାରିବ । ଅତଏବ କି ବୈଦ୍ୟ କି ଗୃହସ୍ଥ ସମସ୍ତଙ୍କ ପକ୍ଷରେ ଉକ୍ତ ପୁସ୍ତକଟି ବିଶେଷ ଉପକାରୀ ହେବ ବୋଲି ମୋର ଦୃଢ଼ ଧାରଣା । ଇତି ।

ଠିକଣା
ପୋ: ବେଲଗୁଣ୍ଠା
ଜି. ଗଞ୍ଜାମ
ତା୧୦-୬-୩୪



ଶ୍ରୀ ରଘୁନାଥ ଶାସ୍ତ୍ରୀ

# (ଅଭିମତ)

---

କବିରାଜ ଶ୍ରୀଯୁକ୍ତ ବୈଦ୍ୟନାଥ ଶର୍ମାଙ୍କର ସଂଗୃହୀତ "ଅନୁଭୂତ-ଚିକିତ୍ସା" ମୁଁ ଆଦ୍ୟୋପାନ୍ତ ପାଠକରି ମଧୁପାନ କଲାପରି ଅତିଶୟ ଆନନ୍ଦ ଅନୁଭବ କଲି । କାରଣ ମଧୁମକ୍ଷିକା ଯେପରି ନାନାଗୁଣବିଶିଷ୍ଟ ନାନାପୁଷ୍ପରୁ ସାରସଂଗ୍ରହ ପୂର୍ବକ ମଧୁସଞ୍ଚୟ କରି ପରାର୍ଥରେ ଦାନକରେ, ସେହିପରି ଲେଖକ ମହାଶୟ ବହୁ ଆୟାସ ସ୍ୱୀକାରପୂର୍ବକ ନାନାୟୁର୍ବେଦ ଶାସ୍ତ୍ରରୁ ନାନାରୋଗହର ମଧୁମୟ ଯୋଗଗୁଡ଼ିକ ସାଙ୍ଗୋପାଙ୍ଗରେ ସଂଗ୍ରହକରି ଏତଦ୍ଦ୍ୱାରା ଲୋକସାଧାରଣଙ୍କର ଯେ ଉପକାର ସାଧନ କରିଅଛନ୍ତି ସେଥିପାଇଁ ମୁଁ ତାଙ୍କୁ ହାର୍ଦ୍ଦିକ ଧନ୍ୟବାଦ ଅର୍ପଣ କରୁଅଛି ଏବଂ ଆଶା କରୁଅଛିଯେ, ପବିତ୍ର ଉତ୍କଳର ପ୍ରତ୍ୟେକ ପଲ୍ଲୀରେ ପ୍ରତ୍ୟେକ ପରିବାର ଏହି ବହିରୁ ଖଣ୍ଡିଏ ୨ ପାଖରେ ରଖିଲେ ସଂପ୍ରତି ଅନୁଭୂତ ଚିକିତ୍ସାର ବିଭୂତିରେ ରୋଗଭୀତି ବିତଯିବାର କୌଣସି ଅପ୍ରତୀତ ହେବନାହିଁ । ଇତି ।

ନୀଳାଚଳକଳ୍ପତରୁ ଭବନ
ଦକ୍ଷିଣଦ୍ୱାର
ପୁରୀ
୧୪-୭-୩୪

**ଶ୍ରୀ ପୂର୍ଣ୍ଣଚନ୍ଦ୍ର ରଥ ଶର୍ମା**



# ସୂଚୀପତ୍ର



## ଔଷଧବିଭାଗ

ପୃଷ୍ଠା

ପୃଷ୍ଠା

# ଅନୁଭୂତି ଚିକିତ୍ସା

## ନାଡ଼ୀ ପରୀକ୍ଷା



ଚିକିତ୍ସକ ନାଡ଼ୀପରୀକ୍ଷା ସମୟରେ ପୁରୁଷରୋଗୀର ଦକ୍ଷିଣ ହସ୍ତର ମଣିବନ୍ଧ ସ୍ଥାନରେ ନିଜର ବାମ ହସ୍ତର ତର୍ଜନୀ ମଧ୍ୟମା ଓ ଅନାମିକା ଅଙ୍ଗୁଷ୍ଠି ଦ୍ଵାରା ଏବଂ ସ୍ତ୍ରୀରୋଗୀର ବାମହସ୍ତର ମଣିବନ୍ଧ ସ୍ଥାନରେ ନିଜର ଦକ୍ଷିଣ ହସ୍ତର ତର୍ଜନୀ ମଧ୍ୟମା ଓ ଅନାମିକା ଅଙ୍ଗୁଷ୍ଠି ଦ୍ଵାରା ନାଡ଼ୀର ଗତିକୁ ଆଲୋଚନା କରିବ । ସାଧାରଣତଃ ନାଡ଼ୀ ପ୍ରାତଃକାଳରେ ମନ୍ଦ ଓ ଶୀତଳ, ମଧ୍ୟାହ୍ନ ସମୟରେ ଚଞ୍ଚଳ ଓ ଉଷ୍ଣ ଏବଂ ସନ୍ଧ୍ୟାକାଳେ ତୀବ୍ର ଓ ସମଶୀତୋଷ୍ଣ ଭାବରେ ଗତିକରେ । ବ୍ୟକ୍ତିବିଶେଷରେ ନାଡ଼ୀର ଗତିରେ ବ୍ୟତିକ୍ରମ ଲକ୍ଷିତ ହୋଇଥାଏ । ନାଡ଼ୀଗତି କଫପ୍ରଧାନ ବ୍ୟକ୍ତିର ମନ୍ଦ, ପିତ୍ତ ପ୍ରଧାନ ବ୍ୟକ୍ତିର ଚଞ୍ଚଳ ଓ ବାତ ପ୍ରଧାନ ବ୍ୟକ୍ତିର ବକ୍ର ହୋଇଥାଏ । ଏକ ମିନିଟ ମଧ୍ୟରେ ଯୁବକର ନାଡ଼ୀ ଯେତେବାର ସ୍ପନ୍ଦିତ ହୁଏ ବୃଦ୍ଧର ତଦପେକ୍ଷା ଅଧିକ ସ୍ପନ୍ଦିତ ହୁଏ ଏବଂ ଶିଶୁର ଆହୁରି ଅଧିକ ସ୍ପନ୍ଦିତ ହୋଇଥାଏ । ପାଶ୍ଚାତ୍ୟ ଚିକିତ୍ସକମାନେ ପରୀକ୍ଷା କରି ଲେଖିଛନ୍ତି ଯେ ଏକ ମିନିଟରେ ଶିଶୁର ନାଡ଼ୀର ଗତି ୧୦୦ ଠାରୁ ୧୩୦ ବାର ପର୍ଯ୍ୟନ୍ତ, ଯୁବାର ନାଡ଼ୀର ଗତି ୭୨ ଠାରୁ ୮୪ ବାର ପର୍ଯ୍ୟନ୍ତ ଏବଂ ବୃଦ୍ଧର ନାଡ଼ୀର ଗତି ୮୦ ଠାରୁ ୯୬ ବାର ପର୍ଯ୍ୟନ୍ତ ସ୍ପନ୍ଦିତ ହୋଇଥାଏ ।

ବାତାଧିକ ନାଡ଼ୀର ଲକ୍ଷଣ—ନାଡ଼ୀ କେବେ କେବେ ଜୋକପରି ସମ୍ମୁଖ ଦିଗରେ ଟାଣି ଟାଣି ହୋଇ ଗତିକରେ । କେବେ କେବେ ବା ସାପପରି ଥରେ ଏପାଖରେ ଥରେ ସେପାଖରେ ଢଳ ଢଳ ଗତିକରେ । ଏହା ବକ୍ର ଓ ଚଞ୍ଚଳ ହୋଇଥାଏ । ଏହା ଚିକିତ୍ସକର ତର୍ଜନୀ ଅଙ୍ଗୁଷ୍ଠି ଦ୍ୱାରା ଅନୁଭୂତ ହୁଏ ।

ପିତ୍ତାଧିକ ନାଡ଼ୀର ଗତି—ଭୟପ୍ରାପ୍ତ କାକ ଓ ଭେକ ଯେପରି ଭୂମି ଉପରେ ଡ଼େଇଁ ଡ଼େଇଁ ଦ୍ରୁତ ପଦରେ ଅଗ୍ରସର ହୁଅନ୍ତି ପିତ୍ତାଧିକ ନାଡ଼ୀ ସେହିପରି ଲମ୍ଫମାନ ଓ ଚଞ୍ଚଳଭାବ ଧାରଣ ପୂର୍ବକ ମୃଷ୍ଟଭାବରେ କେବଳ ସମ୍ମୁଖ ଦିଗରେ ଟାଣି ହୋଇ ଗତିକରେ । ଏହା ଚିକିତ୍ସକର ମଧ୍ୟମା ଅଙ୍ଗୁଷ୍ଠି ଦ୍ୱାରା ଅନୁଭୂତ ହୁଏ ।

କଫାଧିକ ନାଡ଼ୀର ଗତି—ହଂସ ମୟୂର ଓ ପାରାବତ ପ୍ରଭୃତି ଯେପରି ଗତି କରନ୍ତି ଅର୍ଥାତ୍ ଭାରବାହୀ ବ୍ୟକ୍ତି ଯେପରି ପ୍ରତିପଦରେ ନିଜକୁ ଉଶ୍ୱାସରେ ଓ ଧୀର ଭାବରେ ରଖି ମୃଦୁ ମନ୍ଦ ଗତିକରେ , କଫାଧିକ ନାଡ଼ୀ ସେପରି ଈଷତ୍ ସ୍ଥୂଳ, ମୃଦୁମନ୍ଦ, ଭାରାକ୍ରାନ୍ତ,ଦୋଲାୟମାନ, ଭାବ ଧାରଣ ପୂର୍ବକ ଗତିକରେ । ଏହା ଚିକିତ୍ସକର ଅନାମିକା ଅଙ୍ଗୁଷ୍ଠି ଦ୍ୱାରା ଅନୁଭୂତ ହୁଏ ।

ବାତପିତ୍ତାଧିକରେ—ନାଡ଼ୀ ବାରମ୍ବାର ସର୍ପପରି ବକ୍ରଗତିରେ ଏବଂ ବାରମ୍ବାର ଭେକପରି ଉଲ୍ଲମ୍ଫନ (ଡ଼େଇଁ ଡ଼େଇଁ) ଗତିରେ ଗମନ କରେ । ଏହା ଚିକିତ୍ସକର ତର୍ଜନୀ ମଧ୍ୟମା ଅଙ୍ଗୁଳି ଦ୍ୱୟର ସନ୍ଧିଳିତ ସ୍ପର୍ଶରେ ଅନୁଭୂତ ହୁଏ ।

ବାତଶ୍ଳେଷ୍ମାଧିକରେ—ନାଡ଼ୀ କେବେ କେବେ ସର୍ପପରି ବକ୍ର ଗତିରେ ଏବଂ କେବେ କେବେ ହଂସପରି ମନ୍ଦ ଦୋଳାୟମାନ

ଗତିରେ ଗମନ କରେ । ଏହା ଚିକିତ୍ସକର ତର୍ଜନୀ ଅନାମିକା ଅଙ୍ଗୁଳି ଦ୍ୱୟର ସମ୍ମିଳିତ ସ୍ପର୍ଶରେ ଅନୁଭୂତ ହୁଏ ।

ପିତ୍ତକଫାଧିକରେ—ନାଡ଼ୀ କେବେ କେବେ ମଣ୍ଡୂକାଦି ପରି ଉତ୍କ୍ଷେପନ ଗତିରେ, କେବେ କେବେ ମୟୂରାଦି ପରି ମନ୍ଥର ଗତିରେ ଗମନ କରେ । ଏହା ଚିକିତ୍ସକର ମଧ୍ୟମା ଅନାମିକା ଅଙ୍ଗୁଳି ଦ୍ୱୟର ସମ୍ମିଳିତ ସ୍ପର୍ଶରେ ଅନୁଭୂତ ହୁଏ ।

ସାନ୍ନିପାତିକ ନାଡ଼ୀ ବା ତ୍ରିଦୋଷ ନାଡ଼ୀର ଗତି—କାଠଖୁମ୍ପା ପକ୍ଷୀ ଯେପରି ରହି ରହି ଅତି ଦ୍ରୁତ ଗତିରେ କାଷ୍ଠ କୁଟ୍ଟନ କରେ, ସେହିପରି ସାନ୍ନିପାତିକ ନାଡ଼ୀ ରହି ରହି ତିନୋଟିଯାକ ଅଙ୍ଗୁଳିକୁ ଦ୍ରୁତ ଗତିରେ ଆଘାତ କରେ । କେବେ କେବେ ମଧ୍ୟ ଅତି ଦ୍ରୁତ ଗତିରେ ବା ଅତି ମନ୍ଦ ଗତିରେ ରହି ରହି ଗତି କରେ । ମୃତ୍ୟୁ ପୂର୍ବରୁ ନାଡ଼ୀର ଗତି ସମ୍ପୂର୍ଣ୍ଣ ବନ୍ଦ ହୋଇଯାଏ ।

—०O०—

# ନେତ୍ର ପରୀକ୍ଷା

ବାତାଧିକରେ—ନେତ୍ର ଅରୁଣ ବା ଧୂମ୍ରବର୍ଣ୍ଣ, ରୁକ୍ଷ ,ଚଞ୍ଚଳ, କୋଟରଗତ, ସ୍ତବ୍ଧ ଦୃଷ୍ଟି ଏବଂ ସମୟେ ସମୟେ ଦାହଯୁକ୍ତ ହୋଇଥାଏ ।

ପିତ୍ତାଧିକରେ—ନେତ୍ର ହାରିଦ୍ର ରକ୍ତ ବା ନୀଳବର୍ଣ୍ଣ ଦୀପାଲୋକ ଦର୍ଶନରେ ପୀଡ଼ିତ ଓ ଦାହଯୁକ୍ତ ହୋଇଥାଏ ।

କଫାଧିକରେ—ନେତ୍ର ଜଳଯୁକ୍ତ ଅପରିଷ୍କୃତ ଶ୍ୱେତବର୍ଣ୍ଣ ତେଜହୀନ ସ୍ଥିର ଓ କ୍ଷୀଣଦୃଷ୍ଟି ହୋଇଥାଏ ।

ଦ୍ୱନ୍ଦ୍ୱଜଦୋଷରେ—ନେତ୍ର ଉଭୟ ଦୋଷର ପୃଥକ୍ ପୃଥକ୍ ଲକ୍ଷଣ ଗୁଡ଼ିକରେ ମିଳିତ ହୋଇଥାଏ ।

ସନ୍ନିପାତରେ—ନେତ୍ର ତନ୍ଦ୍ରାକୁଳିତ, ମୋହଯୁକ୍ତ, କୋଟରଗତ, ଅତିରୁକ୍ଷ; ରକ୍ତବର୍ଣ୍ଣ ବା ଶ୍ୟାମବର୍ଣ୍ଣ, ସତତ ବିକୃତ, କ୍ଷଣେ କ୍ଷଣେ ଉନ୍ମୀଳିତ, କ୍ଷଣେ କ୍ଷଣେ ନିମୀଳିତ, ବିଲୁପ୍ତ କୃଷ୍ଣତାର ବା ଘୋରତାର ବିଶିଷ୍ଟ ଏବଂ କ୍ଷଣେ କ୍ଷଣେ ବହୁବିଧ ବର୍ଣ୍ଣ ବିଶିଷ୍ଟ ହୋଇଥାଏ ।

—॰ ୦ ॰—

## ଜିହ୍ୱା ପରୀକ୍ଷା

ବାତପ୍ରକୋପରେ ଜିହ୍ୱା ଶାକପତ୍ରପ୍ରଭ କୃଷ୍ଣବର୍ଣ୍ଣ କଠିନ ସ୍ପର୍ଶ ଓ ଫାଟଯୁକ୍ତ ହୋଇଥାଏ ।

ପିତ୍ତପ୍ରକୋପରେ ଜିହ୍ୱା ରକ୍ତ ବା ପୀତବର୍ଣ୍ଣ ଦାହ ଶୁଷ୍କ ଓ ଖରସ୍ପର୍ଶ ହୁଏ ।

କଫାଧିକରେ ଜିହ୍ୱା ଲିପ୍ତ ସରଆବୃତ ଜଳଯୁକ୍ତ ଶ୍ୱେତବର୍ଣ୍ଣ ଓ କଣ୍ଡୁଯୁକ୍ତ ହୁଏ ।

ଦୋଷଦ୍ୱୟର ସମ୍ପର୍କରେ ଜିହ୍ୱା ଉଭୟ ଦୋଷର ଲକ୍ଷଣ ବିଶିଷ୍ଟ ହୁଏ ।

ସନ୍ନିପାତ ପ୍ରକୋପରେ ଜିହ୍ୱା କୃଷ୍ଣବର୍ଣ୍ଣ କଣ୍ଟକଯୁକ୍ତ ଶୁଷ୍କ ଓ ଖରସ୍ପର୍ଶ ହୋଇଥାଏ ।



## ମୂତ୍ର ପରୀକ୍ଷା

ରାତ୍ରର ଶେଷ ପ୍ରହରରେ ରୋଗୀ ଉତ୍ସର୍ଗ କରିଥିବା ମୂତ୍ର କେବଳ ପରୀକ୍ଷା ଯୋଗ୍ୟ । ମୂତ୍ର କାଚ ପାତ୍ରରେ ବା ନୂତନ ମୃତ୍ତିକା ପାତ୍ରରେ ରଖିବା ବିଧି । ସୂର୍ଯ୍ୟୋଦୟରେ ମୂତ୍ରକୁ ପ୍ରକାଶ୍ୟ ସ୍ଥାନରେ ରଖି ତହିଁରେ ତୃଣଦ୍ୱାରା ତୈଳବିନ୍ଦୁ ନିକ୍ଷେପ କରିବ ।

ବାତାଧିକରେ ମୂତ୍ର ସ୍ନିଗ୍ଧ କୃଷ୍ଣପୀତ ବା ଅରୁଣବର୍ଣ୍ଣ ହୋଇଥାଏ। ଏଥିରେ ତୈଳବିନ୍ଦୁ ନିକ୍ଷିପ୍ତ ହେଲେ ତାହା ମୂତ୍ର ଉପରେ ପ୍ରସାରିତ ହୋଇଯାଏ।

ପିତ୍ତାଧିକରେ ମୂତ୍ର ରକ୍ତ ବା ପୀତବର୍ଣ୍ଣ ହୋଇଥାଏ । ଏଥିରେ ତୈଳବିନ୍ଦୁ ନିକ୍ଷିପ୍ତ ହେଲେ ତାହା ବିନ୍ଦୁ ବିନ୍ଦୁ ଭାବରେ ବିଭକ୍ତ ହୋଇଯାଏ ବା ପ୍ରସାରିତ ଅବସ୍ଥାରେ ନାନାଫାଟଯୁକ୍ତ ହୁଏ ।

କଫାଧିକରେ ମୂତ୍ର ଫେନିଳ ଶ୍ୱେତବର୍ଣ୍ଣ ଓ ଘୋଳଯୁକ୍ତ ହୋଇଥାଏ । ଏଥିରେ ତୈଳବିନ୍ଦୁ ନିକ୍ଷିପ୍ତ ହେଲେ ସ୍ଥିର ହୋଇ ରହେ ବା ଅଳ୍ପ ପ୍ରସାରିତ ହୁଏ ।

ସନ୍ନିପାତ ପ୍ରକୋପରେ—ମୂତ୍ର କୃଷ୍ଣ ଅଥବା ବହୁବର୍ଣ୍ଣ ବିଶିଷ୍ଟ ହୋଇଥାଏ । ଏଥିରେ ତୈଳବିନ୍ଦୁ ନିକ୍ଷିପ୍ତ ହେଲେ ତାହା ତଳକୁ ବୁଡ଼ିଯାଏ ।

—ୠ—

# ମଳ ପରୀକ୍ଷା

ବାତ ପ୍ରକୋପରେ ମଳ କୃଷ୍ଣବର୍ଣ୍ଣ ଶୁଷ୍କ ପିତ୍ତ ପ୍ରକୋପରେ ପୀତ ବା ଈଷତ୍ ରକ୍ତବର୍ଣ୍ଣ ତରଳ, କଫ ପ୍ରକୋପରେ ଶ୍ୱେତବର୍ଣ୍ଣ ଓ ଘନ ଦେଖାଯାଏ । ଏହି କଫୋଦ୍ଭବ ମଳର ଅପର ନାମ ଆମ । ମଳ ଅଜୀର୍ଣ୍ଣ ଦୋଷରେ ଅପକ୍ୱ, ଜୀର୍ଣ୍ଣରେ ସ୍ୱଚ୍ଛ, ଅତ୍ୟଗ୍ନି ରୋଗରେ ଶୁଷ୍କ ଏବଂ ଅଗ୍ନିମାନ୍ଦ୍ୟରେ ପାତଳା ହୋଇଥାଏ । ମଳ ଅତ୍ୟନ୍ତ ଦୁର୍ଗନ୍ଧ ଓ ଚନ୍ଦ୍ରିକା ଯୁକ୍ତ ହେଲେ ରୋଗ ଅସାଧ୍ୟ ବୋଲି ବୁଝିବ ।

—o○o—

# ରୋଗ ନିଦାନ



## ଅଗ୍ନିମାନ୍ଦ୍ୟ

ସକାଳବେଳା ଖାଇବା ପଦାର୍ଥ ଉପରବେଳାକୁ ଜୀର୍ଣ୍ଣ ନହେବା, ଖାଇବା ପିଇବାରେ ଇଚ୍ଛା ପ୍ରବଳ ନହେବା, ଗୀତମତ ଝାଡ଼ା ସ୍ୱଚ୍ଛ ନହେବା, ଆଳସ୍ୟ ଅବସାଦ ବୋଧ ହେବା, ଇତ୍ୟାଦି ଅଗ୍ନିମାନ୍ଦ୍ୟ ରୋଗର ଲକ୍ଷଣ ।

ମୁଷ୍ଟିଯୋଗ—(୧) ଜୀରା ୧ ତୋଳା, କଳାଜୀରା ୧ ତୋଳା ଗୁଳୁଚିସାର ୧ ତୋଳା, ମିଶ୍ରି ୩ ତୋଳା, ଏ ସମସ୍ତ ଏକତ୍ର ମିଶ୍ରିତ ଓ ଚୂର୍ଣ୍ଣ କରି ୨ ଅଣାଠାରୁ ୪ ଅଣା ପର୍ଯ୍ୟନ୍ତ ମାତ୍ରାରେ ସକାଳେ ଓ ସନ୍ଧ୍ୟାରେ ସେବନ କରି ଉଷ୍ଣଜଳ ପାନ କରିବ । ଏପରି ଏକ ସପ୍ତାହ ଅଭ୍ୟାସ କଲେ ଅଗ୍ନିମାନ୍ଦ୍ୟ ଦୂର ହୁଏ ।

(୨) ଭୋଜନାନନ୍ତର ପାନମହୁରି ୪ ଅଣା ମାତ୍ରା ଚର୍ବଣ କରି ଅଳ୍ପ ଉଷ୍ଣଜଳ ପାନକଲେ ଖାଦ୍ୟପଦାର୍ଥ ସହଜରେ ଜୀର୍ଣ୍ଣ ହୁଏ ।

(୩) ଗରମ ଅଳ୍ପ ଉଷ୍ଣଜଳରେ ଏକ ଫଡ଼ା କାଗଜିଲେମ୍ବୁ ଚିପୁଡ଼ି ଅଳ୍ପ ଲବଣ ସଂଯୁକ୍ତ କରି ପାନ କରିବ । ଏପରି ପ୍ରତ୍ୟହ ପ୍ରାତଃକାଳେ ଅଭ୍ୟାସ କଲେ ଅଗ୍ନିମାନ୍ଦ୍ୟ ଦୂର ହୁଏ ।

**ଶାସ୍ତ୍ରୀୟ ଔଷଧ**—ଅଭ୍ରରସାୟନ, ପୁଷ୍ପାଶୁଗ, ଅଗ୍ନିସନ୍ଦୀପନୀ ବଟୀ, ଭାସ୍କରଲବଣ ଓ ଅଷ୍ଟପତ୍ରିକର ଚୂର୍ଣ୍ଣ ।

# ଅଜୀର୍ଣ୍ଣ

ଗୁରୁପାକ ଦ୍ରବ୍ୟ ଅଧିକ ପରିମାଣରେ ଭୋଜନ କଲେ ଅନଭ୍ୟସ୍ତ ପଦାର୍ଥ ଭୋଜନ କଲେ ବା ଅସମୟରେ ଭୋଜନ କଲେ, ଥରେ ଖାଇ ତାହା ଜୀର୍ଣ୍ଣ ନହେଉଣୁ ପୁଣି ଖାଇଲେ ଅଜୀର୍ଣ୍ଣରୋଗ ଜାତ ହୁଏ । ଅତିଶୟ ଶୀତ ବା ଉଷ୍ଣ ଅବସ୍ଥାରେ ଆବଦ୍ଧ ରହିବା ଓ ନାନାପ୍ରକାର ମନୋବେଦନା ଥିବା ସମୟରେ ଖାଇବା ଇତ୍ୟାଦି ଅଜୀର୍ଣ୍ଣ ରୋଗର କାରଣ ଅଟେ । ଏହି ରୋଗରେ ପେଟ ଫୁଲେ । ବହୁବାର ଝାଡ଼ା ହୁଏ । ସମୟେ ସମୟେ ବାନ୍ତି ହୁଏ ଓ ଅମ୍ଳୋଦ୍‌ଗାର ହୁଏ । ଏହିପରି ଅବସ୍ଥାରେ ସାବଧାନ ନ ରହିଲେ ବିସୂଚୀ, (କଲେରା) ଅତିସାର, ଅମ୍ଳପିତ୍ତ ଶୂଳ ପ୍ରଭୃତି ରୋଗ ଜାତ ହୁଏ ।

**ଚିକିତ୍ସା**—ହରଡ଼ା ପୋଡ଼ି ଉପରୁ ମଞ୍ଜି କାଢ଼ି ଚୂର୍ଣ୍ଣ କରିବ । ଶୁଣ୍ଠୀ କ ପୋଡ଼ି ଚୂର୍ଣ୍ଣ କରିବ । ଏହି ଉଭୟ ଚୂର୍ଣ୍ଣ ପ୍ରତ୍ୟେକ ୧ ଭାଗ, ବିଡ଼ଲବଣ ଅର୍ଦ୍ଧଭାଗ, ସମସ୍ତ ମିଶ୍ରିତ କରି ଗୋଟିଏ କାଚ ପାତ୍ରରେ ଉତ୍ତମ ଭାବରେ ମୁଖବନ୍ଦ କରି ରଖିବ । ଏଥିରୁ ପ୍ରତ୍ୟହ ସକାଳେ ଓ ସନ୍ଧ୍ୟାରେ ଅର୍ଦ୍ଧ ତୋଳା ମାତ୍ରାରେ ସେବନ କରି ଉଷ୍ଣଜଳ ୨ ପୋଷ ପାନକରିବ । ଏହା ନିୟମିତ ରୂପେ ସେବନ କରି ପଥ୍ୟରେ ରହିଲେ ସମସ୍ତ ପ୍ରକାର ଅଗ୍ନିମାନ୍ଦ୍ୟ ଓ ଅଜୀର୍ଣ୍ଣ ଶାନ୍ତ ହୁଏ ।

(୨) ୪ ତୋଳା ପାନମହୁରି ପାଉ ସେର ଜଳରେ ୧ ଘଣ୍ଟା ବତୁରାଇ ପରେ ସେ ପାନମହୁରିକୁ ଉତ୍ତମରୂପେ ମନ୍ଥାମନ୍ଥି କରି ଫିଙ୍ଗି ଦେବ । ଜଳତକ ଛାଣିକରି ଗ୍ରହଣ କରିବ । ଏହି ଜଳସହ ଏହାର ଚତୁର୍ଥାଂଶ ଚୂନ ଗୋଳା ଛଣାଜଳ ଓ ଗୋଟିଏ କାଗଜିଲେମ୍ବୁ

ରସ ମିଶାଇ ରଖିବ । ଏହି ସଂମିଶ୍ରିତ ଜଳ ୨ ପୋଷ ମାତ୍ରାରେ ୧ ଘଣ୍ଟା ଅନ୍ତରରେ ୩।୪ ଥର ପାନ କଲେ ସମସ୍ତ ପ୍ରକାର ଅଜୀର୍ଣ୍ଣ ଶାନ୍ତ ହୁଏ ।

(୩) ଲବଙ୍ଗ, ବିଟଲୁଣ, ପାନମହୁରି, ଯୁଆଣି ଏସମସ୍ତକୁ ସମାନ ଭାଗରେ ଗ୍ରହଣ କରି ଲେମ୍ବୁରସରେ ମର୍ଦ୍ଦନ କରି କୋଳମଞ୍ଜିପରି ବଟିକା କରିବ । ଏଥିରୁ ଗୋଟିଏ ଲେଖେ ବଟିକା ଚାଉଳଧୁଆ ପାଣିସହ ସେବନ କଲେ ଅଜୀର୍ଣ୍ଣଦୋଷ ଶାନ୍ତ ହୁଏ ।

(୪) କାଗଜୀଲେମ୍ବୁ ରସ ସହ ଅଳ୍ପ ସୈନ୍ଧବଲବଣ ଓ ଚିନି ମିଶାଇ ସେବନ କଲେ ଅଜୀର୍ଣ୍ଣ ଶାନ୍ତହୁଏ ।

(୫) ଅନ୍ନରୁ ଗଳାଯାଇଥିବା ପେଜରେ ଅଳ୍ପ ସଚଳଲବଣ ଓ ଅତ୍ୟଳ୍ପ ହିଙ୍ଗୁ ମିଶାଇ ପାନକଲେ ଅଜୀର୍ଣ୍ଣ ଓ ଅଗ୍ନିମାନ୍ଦ୍ୟ ଶାନ୍ତହୁଏ ।

**ଶାସ୍ତ୍ରୀୟ ଔଷଧ**—କ୍ରବ୍ୟାଦରସ, ହିଙ୍ଗ୍ୱଷ୍ଟକ ଚୂର୍ଣ୍ଣ, ବଜ୍ରକ୍ଷାର, ଅଗ୍ନିକୁମାର, ହୂଦାବଟୀ, ଲବଙ୍ଗାଦି, ଅଗ୍ନିମୁଖ ଚୂର୍ଣ୍ଣ, ଶଙ୍ଖବଟୀ, ଭାସ୍କରଲବଣ, ଅଗ୍ନିଦୀପ୍ତିଚୂର୍ଣ୍ଣ ।



# ଅତିସାର

ଅଜୀର୍ଣ୍ଣଦୋଷ ବୃଦ୍ଧି ପାଇଲେ ଦୂଷିତ ଜଳବାୟୁ କର୍ତ୍ତୃକ କୃମିବଶତଃ ମନର କୌଣସି ରୂପ ପ୍ରଚଣ୍ଡ ଉଦ୍‌ବେଗ ହେଲେ, ଶୀତକାଳରେ ଅତିରିକ୍ତ ଶୀତକ୍ରିୟା, ଉଷ୍ମ କାଳରେ ଅତିରିକ୍ତ ଉଷ୍ଣସେବନ, ବା ରୌଦ୍ର ସେବନ, ଏହି ସମସ୍ତ ବା କୌଣସିଟି ଦ୍ୱାରା ପେଟ ଗରମ ହେଲେ ବା ଜଠରାଗ୍ନି ସ୍ତିମିତ ହେଲେ ମଳର ଅତିଶୟ ନିଃସରଣ ହୋଇଥାଏ । ଏହାକୁ ଅତିସାର କହନ୍ତି ।

**ଚିକିତ୍ସା**—ଅତିସାର ରୋଗରେ ପ୍ରଥମରେ ତାହାର ଅପକ୍ୱାବସ୍ଥା ବା ପକ୍ୱାବସ୍ଥା ବୁଝି ଚିକିତ୍ସା କରିବ । ଅପକ୍ୱାବସ୍ଥାରେ ଅଗ୍ନିଦୀପ୍ତିକ ପାଚକ ଔଷଧ ଏବଂ ପକ୍ୱାବସ୍ଥାରେ ଧାରକ ଔଷଧ ପ୍ରୟୋଗ କରିବ । ପ୍ରଥମରେ ତୀବ୍ରଧାରକ ଔଷଧ ଦେବନାହିଁ ।

(୧) ଜାଇଫଳ,ଜୀରା,ଅଲନ୍ଧୁ,ବେଲଶୁଣ୍ଠା ପ୍ରତ୍ୟେକର ଚୂର୍ଣ୍ଣ ସମଭାଗ ଚୂନ ଗୋଳାଜଳ ସହ ମର୍ଦ୍ଦନ କରି ୨ ରତି ପ୍ରମାଣେ ବଟିକା କରିବ । ତିନଘଣ୍ଟା ଛଡ଼ା ଗୋଟିଏ୨ ବଟିକା ଦେବ ଗରମ ଥିଲେ ଗୁଡ଼ୁଚି ଧୂଆ ପାଣିସହ କଫାଧିକ ଥିଲେ କର୍ପୂର ଜଳସହ ସେବନ କଲେ ନିଶ୍ଚୟ ଅତିସାର ଶାନ୍ତ ହୁଏ ।

(୨) ମୁଥା କର୍ପୂର, ଫଟିକ, ପାନମହୁରୀ ଏ ସମସ୍ତ ସମଭାଗରେ ଗୁଡ଼ୁଚିଧୂଆ ପାଣିସହ ବାଟି ନାଭିର ଚାରି ଦିଗରେ ପ୍ରଲେପ ଦେଇ ଚିତହୋଇ ଶୋଇଲେ ଏବଂ ଏହା କେବଳ ବଟିକା କରି ୨।୪ ଟି ଖାଇଲେ ଅତିସାର ଶାନ୍ତ ହୁଏ ।

(୩) ଜାଇଫଳ ଜଳସହ ଚନ୍ଦନପରି ଘୋରି ନାଭି ଉପରେ ପ୍ରଲେପ ଦେଲେ ପ୍ରବଳ ଅତିସାର ଶାନ୍ତ ହୁଏ ।

(୪) କମଲାଶୋପା, ବେଲପତ୍ରି, ଗଙ୍ଗାଇ, ଶୁଣ୍ଠୀ, ବିଟଲୁଣ, ଜୀରା ଶଙ୍ଖଭସ୍ମ ମୁଥା କଇଁଥପତ୍ର ଏ ସମସ୍ତ ଏକତ୍ର ଜଳସହ ବାଟି କୋଳପରି ବଟିକା କରି ଶୁଖାଇ ରଖିବ । ଏହି ବଟିକା ଗୁଡ଼ୁଚି ଧୂଆ ପାଣି କର୍ପୂର ମିଶ୍ରିତଜଳ ବା ଲେମ୍ବୁରସ ସହ ଦିନକେ ୩।୪ ଟି ଲେଖାରେ ସେବନ୍ କଲେ ସମସ୍ତ ପ୍ରକାର ଅତିସାର,ଅଜୀର୍ଣ୍ଣ, ଝାଡ଼ା ଗ୍ରହଣୀ ପ୍ରଭୃତି ଶାନ୍ତ ହୁଏ ଓ ଜଠରାନଳ ଦୀପ୍ତ ହୁଏ ।

**ଶାସ୍ତ୍ରୀୟ ଔଷଧ** —ବୃଷ୍ୟକଲ୍ପଷଷ୍ଠୀ ଭୁବନେଶ୍ୱର, ସ୍ମରବାଣ, ନୃପତିବଲ୍ଲଭ, ବୃହଲ୍ଲକ୍ଷ୍ମୀବିଳାସ, ସର୍ବାଙ୍ଗସୁନ୍ଦର, ପ୍ରାଣେଶ୍ୱର, କର୍ପୂରେଶ୍ୱର, ଅଜୀର୍ଣ୍ଣକଣ୍ଟକ, କର୍ପୂରରସ ।



## ଅନିଦ୍ରା

ନାନା ରୋଗର ଉପଦ୍ରବ ସ୍ୱରୂପ ଅନିଦ୍ରା ଘଟିଥାଏ ଯେଉଁ ରୋଗ ହେତୁ ଅନିଦ୍ରା ଘଟିଥାଏ, ସେହି ମୂଳ ରୋଗର ଚିକିତ୍ସା କଲେ ଅନିଦ୍ରା ଉପଦ୍ରବ ଶାନ୍ତ ହୁଏ । ବାୟୁ ଦୋଷାଧିକ୍ୟ ବଶତଃ ବହୁ ସ୍ଥାନରେ ଅନିଦ୍ରା ଘଟିଥାଏ । ଏହି ଧରଣ ଅନିଦ୍ରାକୁ ନିମ୍ନୋକ୍ତ ଉପାୟରେ ଶାନ୍ତ କରିବ ।

(୧) ପଇଡ଼ ପାଣି ସହ ମିଶ୍ରି ହରଡ଼ା ଅଁଳା ବାହାଡ଼ା ବଭୂତିର ସେହି ପାଣି ଛାଣି ପାନକଲେ ଏବଂ ସେହି ପାଣିରେ କନା ବୁଡ଼ାଇ ମଥା ଉପରେ ଥୋଇଲେ ମସ୍ତିଷ୍କ ଶୀତଳ ହୋଇ ନିଦ୍ରା ହୁଏ ।

(୨) କେଶରିନ୍ଦ୍ର ପନ୍ଦ ଶୁଣୁଶୁଣିଆ ଶାଗ ହିମସାଗର ପତ୍ର ଏକତ୍ର ଛେଚି ସେହି ରସ ଚେନ୍ନି ସହ ପାନ କଲେ ନିଦ୍ରା ହୁଏ ।

(୩) ଘୃତକୁମାରୀ ରସ ମସ୍ତକରେ ମର୍ଦ୍ଦନ କଲେ ଏବଂ ଏହା ଚେନ୍ନି ସହ ଖାଇଲେ ନିଦ୍ରା ହୁଏ ।

(୪) ପଟୋଳ ଗୁଡ଼ୁଚି ଶତାବରୀ ଏକତ୍ର ପେଷଣ କରି ତାହାର ରସସହ ଏକ ରତି ମକରଧ୍ୱଜ ମର୍ଦ୍ଦନକରି ପାନ କଲେ ନିଦ୍ରା ହୁଏ ।

(୫) ଶୁଣୁଶୁଣିଆ ଶାଗ ଭଜା ଖାଇଲେ ନିଦ୍ରା ହୁଏ ।

(୬) ତୈଳ ମର୍ଦ୍ଦନ କରି ଅବଗାହ ସ୍ନାନ କଲେ ନିଦ୍ରା ହୁଏ ।

**ଶାସ୍ତ୍ରୀୟ ଔଷଧ**—ବୃହତଚନ୍ଦ୍ରାମଣି ଚତୁର୍ମୁଖ, ବାତଚନ୍ଦ୍ରାମଣି, ପ୍ରାଣବଲ୍ଲଭ, ପ୍ରଦ୍ୟୋମ୍ନଚୂର୍ଣ୍ଣ, ମକରଧ୍ୱଜ, ମଧ୍ୟମନାରାୟଣ ତୈଳ, ବିଷ୍ଣୁତୈଳ, ହିମସାଗର ତୈଳ ।

—∘○∘—

# ଅମ୍ଳପିତ୍ତ

ଅତିରିକ୍ତ ମିଷ୍ଟଦ୍ରବ୍ୟ ଖାଇବା, ଭଜାପୋଡ଼ା ପ୍ରଭୃତି ଗୁରୁପାକ ଦ୍ରବ୍ୟ ସର୍ବଦା ଖାଇବା, ଭୋଜନର ଅବ୍ୟବହିତ ପରେ ଗୁରୁତର କାର୍ଯ୍ୟରେ ଧଡ଼ପଡ଼ ହୋଇ ଦୌଡ଼ିବା, ଏକ ଦିନ ଏକସମୟରେ ଅନ୍ୟ ଦିନ ଅନ୍ୟ ସମୟରେ ଆହାର କରିବା, ମ୍ୟାଲେରିଆ ଜ୍ୱରରେ ବହୁଦିନ ଆକ୍ରାନ୍ତ ହେବା ପରେ ଯକୃତର ବିକୃତ ହେବା, ଯୌବନରେ ଅନ୍ୟାୟରେ ଅତିରିକ୍ତ ଶୁକ୍ରକ୍ଷୟ ହେତୁ ପାକଯନ୍ତ୍ରର ଦୁର୍ବଳତା, ବୃଥା ବିଳାସିତାର ଅନୁରୋଧରେ ବିନାସର୍ଦ୍ଦିରେ ଗରମ ଚା’ ପାନ କରିବା, ଅତିରିକ୍ତ ମାନସିକ ପରିଶ୍ରମ, ଅଥଚ ତତ୍ସଙ୍ଗରେ ଉପଯୁକ୍ତ କାୟିକ ପରିଶ୍ରମର ଅଭାବ । ଦେହରେ ଉପଦଂଶ ବିଷର ଅବସ୍ଥିତି, ଅତିରିକ୍ତ ମଦ୍ୟପାନ, ଦିବସରେ ମୈଥୁନ, କୃମି ଉତ୍ପାତ, ଇତ୍ୟାଦି ହେତୁରୁ ଆଜିକାଲି ଶତକଡ଼ା ଅଶିଏ ଜଣର ଅମ୍ଳପିତ୍ତ ରୋଗ ଜାତ ହୋଇଥିବା ଦେଖାଯାଏ ।

ଅମ୍ଳପିତ୍ତ ଅତି ଦୁଃସାଧ୍ୟ । ଥରେ ମାତ୍ର ଦେହରେ ସ୍ୱତମତ ବଦ୍ଧମୂଳ ହେଲେ ପରିଶେଷରେ ଚିର ଜୀବନର ସଙ୍ଗୀ ହୋଇ ରହେ । ଏଥିରୁ କ୍ରମରେ ଏପରି ଉପସର୍ଗ ସକଳ ଜାତ ହୁଏ ଯେ ଅମ୍ଳ ଯେ ସେ ସମସ୍ତର କାରଣ ଏହା ଧରିହୁଏ ନାହିଁ । ହିଷ୍ଟିରିଆ, ଉନ୍ମାଦ, ଅକାରଣ

ମନୋବିକ୍ଷେପ, ସର୍ବଦା ମୂତ୍ରତ୍ୟାଗ, ଶିରପୀଡ଼ା, ମୁଣ୍ଡ ବୁଲେଇ ହେବା, ଦେହରେ ଚକା ଚକା ଚିହ୍ନ, ଜ୍ୱରପରି ବୋଧ, ଜଳୋଦର, ଖଣ୍ଡିକାସ ଶୋଥ, ଗୁଳ୍ମ ଶୂଳ, ସର୍ବଦା ସର୍ଦ୍ଦିବୋଧ ବା ହଠାତ୍ ଅତିରିକ୍ତ ଗରମବୋଧ ଧୀମାନଙ୍କର ଉତ୍ତେଜୋଦ୍ରେକ, ଶୁକ୍ରତାରଲ୍ୟ, ସ୍ୱପ୍ନଦୋଷ, ପ୍ରସ୍ରାବସହ ଗନ୍ଧକ ଜଳପରି ବସ୍ତୁ ନିଃସରଣ, ବହୁମୂତ୍ର, ହୃଦ୍‌ରୋଗ, କ୍ଷୟକାସ, ଓଜଃକ୍ଷୟ ପ୍ରଭୃତି ନାନା ଉପଦ୍ରବ ଅମ୍ଳପିତ୍ତରୁ ଜାତ ହୁଅନ୍ତି । ଏହି ରୋଗରେ କାହାର କାହାର ପାତଲାଝାଡ଼ା, କାହାର କୋଷ୍ଠବଦ୍ଧ, କାହାର ସାଦା ଉଦ୍‌ଗାର, କାହାର ଅମ୍ଳାସ୍ୱାଦଯୁକ୍ତ ଉଦ୍‌ଗାର, କାହାର ଦ୍ରବ୍ୟର ଅମଗନ୍ଧଯୁକ୍ତ ଉଦ୍‌ଗାର ହୋଇଥାଏ । ଏହି ରୋଗରେ ବୈଦ୍ୟର କଠୋର ନିୟମ ପାଳନ କରିବା ଅପେକ୍ଷା ରୋଗୀର ସହ୍ୟାସହ୍ୟ ବୁଝି ପଥ୍ୟ ବ୍ୟବସ୍ଥା କରିବା ଶ୍ରେୟଃ । ଯେହେତୁ ଦେଖାଯାଏ ଯେ କିଏ ଏକବିନ୍ଦୁ ଘୃତ ଖାଇଲେ ସାତ୍‌ଦିନ ଘୃତର ଉଦ୍‌ଗାର ଆସେ । କିଏ କିଏ ଘୃତ ଖାଇ ଭଲଥାନ୍ତି । କିଏ କିଏ ଦୁଧ ଖାଇ ଆରାମ ଥାନ୍ତି । କେହି କେହି ଦୁଧ ଖାଇବା ଆଦୌ ସହ୍ୟକରି ପାରନ୍ତି ନାହିଁ । ଅନେକେ ଅମ୍ଳର ଲେଶମାତ୍ର ସହି ପାରନ୍ତି ନାହିଁ । କେହି କେହି ଅମ୍ଳ ଖାଇ ଭଲଥାନ୍ତି । ଅମ୍ଳ ରୋଗୀ ଯେତେ ଦୂର ସମ୍ଭବ ଜଳପାନ କମାଇ ଦେବା ଆବଶ୍ୟକ । କିନ୍ତୁ ଏକବାରେ ଜଳପାନ ତ୍ୟାଗ କରିବା ଭଲନୁହେ । ଶରୀର ପୋଷଣ ସକାଶେ ମାନବ ଶରୀରକୁ କେତେକ ପରିମାଣ ଜଳପାନ ନିତାନ୍ତ ଆବଶ୍ୟକ । ପ୍ରଥମରୁ ଜଳପାନ ତ୍ୟାଗକଲେ ଶେଷରେ ଆଉ ଜଳ ସହ୍ୟ ହୁଏନାହିଁ । ରୋଗୀ କ୍ରମେ ଶୁଷ୍କକାୟ, କୃଶ ଓ ଲାବଣ୍ୟ ହୀନ ହୋଇପଡ଼େ । ଦିନର ଆହାରର ମଧ୍ୟରେ ଜଳପାନ ନ କରି ଜୁଷାପାନ କଲେ ବିଶେଷ ଉପକାର ଦେଖାଯାଏ ।

ଶାସ୍ତ୍ରରେ ଲେଖାଅଛି—

ଅମ୍ବୁସଃ ପ୍ରସୃତାନ୍ୟଷ୍ଟୌ ରବାବନୁଦିତେ ପିବତ୍
ବାତପିତ୍ତ କଫାନ୍ ଜିତ୍ୱା ଜୀବେତ୍ ବର୍ଷଶତଂ ସୁଖୀ ।

ଅର୍ଥାତ ସୂର୍ଯ୍ୟୋଦୟର ପୂର୍ବରୁ ଆଠପୋଷ ବା ଅଧସେର ଜଳ ପ୍ରତିଦିନ ପାନକଲେ ବାତପିତ୍ତ କଫଜନିତ ସମସ୍ତ ରୋଗ ଦୂର ହୁଏ । ମନୁଷ୍ୟ ଶତବର୍ଷ ପରମାୟୁ ଲାଭ କରେ । ଯେଉଁମାନେ କଫସାମ୍ୟ ବ୍ୟକ୍ତି ସେମାନଙ୍କର ପ୍ରଥମେ ୨ ଉଷାପାନ ଦ୍ୱାରା ସର୍ଦ୍ଦିବୋଧ ହୁଏ । କିନ୍ତୁ ନାସିକା ବନ୍ଦକରି ଜଳପାନ କଲେ କଫ ବୃଦ୍ଧି ହୁଏନାହିଁ । ସଂକ୍ଷେପରେ ଏହି ରୋଗରେ ଔଷଧ ଅପେକ୍ଷା ପଥ୍ୟଦାନରେ ବେଶି ଦୃଷ୍ଟି ଦେବା ବିଧି ।

(୧) ହଂସ ଡ଼ିମ୍ବ ଖୋଲାର ଭସ୍ମ ୧ ଭାଗ, ଯୁଆଣି ୨ ଭାଗ ତେନ୍ତୁଳଫଳ ଖୋଳର ଭସ୍ମ ୧ ଭାଗ ସାଜି ମାଟି ଅର୍ଦ୍ଧ ଭାଗ, ଅଳା ଚୂର୍ଣ୍ଣ ୨ ଭାଗ, ଏ ସମସ୍ତ ଏକତ୍ର କରି ରଖିବ । ଏଥିରୁ ପ୍ରତ୍ୟହ ୩।୪ ଥର ଲେଖେ ୨।୧ ଅଣା ଓଜନ ମାତ୍ରାରେ ଶୀତଳ ଜଳସହ ଆହାରାନ୍ତେ ସେବନ କଲେ ଅମ୍ଳପିତ୍ତ ଓ ତଜ୍ଜନିତ ଶୂଳ ନିବାରିତ ହୁଏ ।

(୨) କଞ୍ଚା ହଳଦୀ ପଟୋଳ, କଞ୍ଚା ଅଁଳା, ଅଦା ଏକତ୍ର ଛେଚି ଏହାର ରସରେ ୩୦ ଟୋପା ଅମୃତଭଣ୍ଡା ଷୀର ଦେଇ ପ୍ରତିଦିନ ପ୍ରାତଃକାଳେ ସେବନ କଲେ ଯକୃତର ଦୋଷ ଓ ଅମ୍ଳ ଦୋଷ ନିବାରିତ ହୁଏ ।

(୩) ପୋଦନା ପତ୍ର, ପୁରୁଣା ତେନ୍ତୁଳି ରସ, ଦ୍ରାକ୍ଷା ଗୁଡ଼ ଗୋଲ ମରିଚ ଏକତ୍ର ବାଟି ଚଟଣୀ ତିଆରି କରି ପ୍ରତ୍ୟହ ଭାତସହ ଖାଇଲେ ଅମ୍ଳପିତ୍ତ ଉପଶମିତ ହୁଏ ।

(୪) ମିଶ୍ରି ୪ ଭାଗ, ଶୋଲ୍ଲା ଚଣା ୩ ଭାଗ, ଅଁଳା ୨ ଭାଗ, ଲବଙ୍ଗ ୧ ଭାଗ ଏକତ୍ର ବତୁରାଇ ରଖି ପ୍ରାତଃକାଳେ ଓ ସନ୍ଧ୍ୟାକାଳେ ପାନ କଲେ ଅମ୍ଳପିତ୍ତ ନିବାରିତ ହୁଏ ।

(୫) ହଗଡ଼ା ବାହାଡ଼ା ଅଁଳା ବଉଳ ସ୍ୱଚ୍ଛ ଚୂନ ଜଳସହ ତାହାର ପାଣି ପାନ କଲେ ବିଶେଷ ଉପକାର ହୁଏ ।

**ଶାସ୍ତ୍ରୀୟ ଔଷଧ-** ଅମ୍ଳପିତ୍ତାନ୍ତକ ମୋଦକ, ଅମ୍ଳକ୍ଷାର, ସିତାମଣ୍ଡୁର ଅଗ୍ନିମୁଖ ଚୂର୍ଣ୍ଣ ଅଗ୍ନିସନ୍ଦୀପନ, ବଜ୍ରକ୍ଷାର, କ୍ଷୁଧାବତୀ, ଧାତ୍ରୀଲୌହ, ମହାଶଙ୍ଖ ବଟୀ, ଆମଲକୀଖଣ୍ଡ, ନାରିକେଳଖଣ୍ଡ, ଅବିପତ୍ତିକର ଚୂର୍ଣ୍ଣ, ଅଗ୍ନିତୁଣ୍ଡୀ ବଟୀ, ଖଣ୍ଡକୁଷ୍ମାଣ୍ଡାବଲେହ ।

—:o:—

## ଅର୍ଶଃ

ମଳମୂତ୍ରାଦିର ବେଗଧାରଣ, ମଳତ୍ୟାଗ କାଳେ ଅତିରିକ୍ତ କୁନ୍ଥନ ଉତ୍କଟ ଭାବେ ଉପବେଶନ, ବହୁକାଳ ସ୍ଥାୟୀ କୋଷ୍ଠ ବଦ୍ଧତା, ମଳଦ୍ୱାରସ୍ଥ କ୍ଷୁଦ୍ରକୃମି, ପୁରାତନ ଆମାଶୟ ରୋଗ, ସର୍ବଦା ଗ୍ରହଣୀ ଅତିରିକ୍ତ ଲଙ୍କାମରିଚ ଭକ୍ଷଣ, ଅଗ୍ନି ନିକଟରେ ସନ୍ତାନ କାର୍ଯ୍ୟ କରିବା, ସର୍ବଦା କୋମଳ ଶଯ୍ୟାରେ ବସିବା, ଶୋଇବା, ଅତିରିକ୍ତ ମଦ୍ୟପାନ, ଜନନୀର ଈର୍ଷା ଓ କ୍ରୋଧବଶତଃ ପିତ୍ତ ବିକୃତ ହେବା, ମାତା ପିତାଙ୍କର ଅର୍ଶ ଥିବା ଇତ୍ୟାଦି କାରଣରୁ ଅର୍ଶ ଜାତହୁଏ ।

ଏହା ଦୋଷ ଭେଦରେ ଛଅ ପ୍ରକାର, ବାତଜ ପିତ୍ତଜ କଫଜ, ତ୍ରିଦୋଷଜ, ରକ୍ତଜ ଓ ସହଜ ଏବଂ ସ୍ଥାନ ଭେଦରେ ଦୁଇପ୍ରକାର ଯଥା ବାହ୍ୟର ବଳିଜାତ ଓ ଅନ୍ତର୍ବଳିଜାତ ।

ଚିକିତ୍ସା—ଅର୍ଶ ରୋଗର ଚିକିତ୍ସା ଚାରି ପ୍ରକାର, ଯଥା- ଔଷଧ ପ୍ରୟୋଗ, କ୍ଷାର ପ୍ରୟୋଗ, ଶସ୍ତ୍ର ପ୍ରୟୋଗ ଓ ଅଗ୍ନି କ୍ରିୟା, ଶୁଷ୍କାର୍ଶରେ ତୀକ୍ଷ୍ଣ ପ୍ରଲେପାଦି କ୍ରିୟା ବିଧେୟ । ଯେଉଁ ଅର୍ଶରେ ରକ୍ତ ପ୍ରସ୍ରାବାଦି ହୁଏ ତହିଁରେ ରକ୍ତ ପିତ୍ତର ଚିକିତ୍ସା କର୍ତ୍ତବ୍ୟ, ଯଦି ଅର୍ଶର ମାଂସାଙ୍କୁର ସ୍ଫୀତ ବା କଠିନ ହୁଏ । ତହିଁରେ ରକ୍ତ ସଞ୍ଚିତ ଥାଏ ତାହା ହେଲେ ଅସ୍ତ୍ର ବା ଜଳୋକା ଦ୍ୱାରା ରକ୍ତ ମୋକ୍ଷଣ କର୍ତ୍ତବ୍ୟ, ଏହି ରୋଗରେ ତରଳ ମଳ ହେଲେ ବାତାତିସାର ପରି ଏବଂ କଠିନ ମଳ ହେଲେ ଉଦାବର୍ତ୍ତର ପରି ଚିକିତ୍ସା କର୍ତ୍ତବ୍ୟ ।

(୧) ଖାଡ଼ସିଜୁକ୍ଷୀର ଓ ହଳଦୀ ଚୂର୍ଣ୍ଣ ଏକତ୍ର ବାଟି ଅର୍ଶ ଉପରେ ଲେପିଲେ ତାହା ଖସିଯାଏ ।

(୨) ଅରଖ କ୍ଷୀର ସିଜୁକ୍ଷୀର ପିତା ଲାଉର କଅଁଳ ପତ୍ର କରଞ୍ଜଛାଲି ଏ ସମସ୍ତ ସମଭାଗରେ ଛାଗମୂତ୍ର ସହି ପେଷଣ କରି ବଳରେ ଲେପିଲେ ଅର୍ଶ ଖସିଯାଏ ।

(୩) ପୁରାତନ ଗୁଡ଼ ଜଳରେ ଗୋଳି ତହିଁରେ ଜାଇଫଳ ଚୂର୍ଣ୍ଣ ମିଶାଇ ପାକକରି ବର୍ତ୍ତି ପ୍ରସ୍ତୁତ କରିବ । ଏହି ବର୍ତ୍ତି ପ୍ରତ୍ୟହ ଗୁହ ମଧ୍ୟରେ ପ୍ରବେଶ କରାଇଲେ ଅର୍ଶ ବିନଷ୍ଟ ହୁଏ ।

(୪) ସିଜୁକ୍ଷୀର ଓ ହଳଦୀ ଚୂର୍ଣ୍ଣ ଗୋଳି ତହିଁରେ କପାସୂତା ବୁଡ଼ାଇ ଶୁଖାଇ ରଖିବ । ଏପରି ବାରମ୍ବାର କରିବ । ସେହି ସୂତା ଦ୍ୱାରା ଅର୍ଶକୁ ବାନ୍ଧିଲେ ଅର୍ଶ ଛିଡ଼ିଯାଏ ।

(୫) ଅପାମାର୍ଗ ମୂଳର କ୍ଷାର ଓ ହରିତାଳ ସମଭାଗରେ ଜଳସହ ପେଷଣ କରି ଅର୍ଶରେ ଲେପିଲେ ତାହା ଛିଡ଼ିଯାଏ ।

(୬) ଅର୍ଶ ରୋଗରେ କୋଷ୍ଠବଦ୍ଧ ଥିଲେ ପ୍ରତ୍ୟହ ଖାଲିପେଟରେ ଯୁଆଣୀଚୂର୍ଣ୍ଣ ଓ ବିଟଲୁଣ ସହ ତକ୍ରପାନ କରାଇବ ।

(୭) ମଳଦ୍ୱାରରେ ଫୀପାଖାଉ଼ ଗୋଟିକରେ ଘୃତ ଓ ସୈନ୍ଧବ ଲୁଣ ଗୋଳାଇ ଗୁହ୍ୟ ମଧ୍ୟରେ ପ୍ରବେଶ କରାଇବ ।

(୮) ପ୍ରତ୍ୟହ ହରଡ଼ାଚୂର୍ଣ୍ଣ ଓ ଗୁଡ଼ ଅଭ୍ୟାସ କରି ସେବନ କଲେ ଅର୍ଶ ନିବାରିତ ହୁଏ ।

(୯) ବାୟୁର ଅନୁଲୋମକରଣ ନିମିତ୍ତ ଘୃତଭର୍ଜିତ ହରଡ଼ା ଚୂର୍ଣ୍ଣ ତିହୁଡ଼ି ମୂଳ ଓ ଦନ୍ତିମୂଳଚୂର୍ଣ୍ଣ ଗୁଡ଼ସହ ମର୍ଦ୍ଦନ କରି ମୋଦକ ଗଢ଼ିବ । ଏଥିରୁ ଗୋଟିଏ ଲେଖାରେ ମୋଦକ ପ୍ରତ୍ୟହ ସନ୍ଧ୍ୟାରେ ଭକ୍ଷଣ କରିବ ।

(୧୦) ବନ୍ୟ ଓଲ (ଅଭାବରେ ଗ୍ରାମ୍ୟ ଓଲ) ବସ୍ତ୍ରଖଣ୍ଡ ଓ ମୃତ୍ତିକା ଲିପ୍ତ କରି ପୁଟପାକରେ ସିଦ୍ଧ କରି ସେହି ସିଦ୍ଧ ଓଲ ପ୍ରତ୍ୟହ ତୈଳ ଓ ସୈନ୍ଧବ ସହ ଭକ୍ଷଣ କଲେ ଅର୍ଶ ବିନଷ୍ଟ ହୁଏ ।

(୧୧) ଖୋସାଛଡ଼ା କୃଷ୍ଣତିଳ ୮ ତୋଳା ପରିମାଣେ ଖାଇ ଅଳ୍ପ ଶୀତଳ ଜଳ ପାନ କରିବା ଅଭ୍ୟାସ କଲେ ଅର୍ଶ ବିନଷ୍ଟ ହୁଏ ।

(୧୨) ବଣଓଲ ଚୂର୍ଣ୍ଣ ୧୬ ଭାଗ କଳାଜୀରା ୮ ଭାଗ, ଗନ୍ଧକ ୨ ଭାଗ, ଏସମସ୍ତ ଏକତ୍ର ଚୂର୍ଣ୍ଣ କରି ଏକ ତୋଳା ମାତ୍ରାରେ ପ୍ରତ୍ୟହ ଖାଲି ପେଟରେ ମାଖନ ଓ ମିଶ୍ରି ସହ ସେବନ କଲେ ଅର୍ଶ ବିନଷ୍ଟ ହୁଏ ।

(୧୩) ଗଞ୍ଜାଇ ଚୂର୍ଣ୍ଣ ୪ ଭାଗ, ହଳଦ ଗୁଣ୍ଡ ୨ ଭାଗ, ଶୁଣ୍ଠୀ ଚୂର୍ଣ୍ଣ ୧ ଭାଗ, ଏକତ୍ର କନାରେ ବାନ୍ଧି ନିଆଁରେ ଗରମ କରି ତଦ୍ୱାରା ସେକ ଦେଲେ ଅର୍ଶର ଯନ୍ତ୍ରଣା ଦୂର ହୁଏ ।

(୧୪) ଅଗ୍ନି ଉପରେ ଝୁଣା ପକାଇ ତାହାର ଧୂପ ଅର୍ଶକୁ ଦେଖାଇଲେ ଅର୍ଶର ଯନ୍ତ୍ରଣା ଦୂର ହୁଏ ।

**ଶାସ୍ତ୍ରୀୟ ଔଷଧ**—ଅର୍ଶକୁଠାର, ପ୍ରାଣଦାଗୁଡ଼ିକା, ବୃହତ୍ ଶୂରଣ ମୋଦକ, ବୃହତ୍ ଚନ୍ଦ୍ରପ୍ରଭା ଗୁଡ଼ିକା, ଭଲ୍ଲାତକ ଲେହ ।

# ଅଶ୍ମରୀ--ଶର୍କରା ।

ଅଶ୍ମରୀ ଚତୁର୍ବିଧ ପ୍ରକାର, ବାତଜ, ପିତ୍ତଜ, କଫଜ ଓ ଶୁକ୍ରଜ । କୁପିତ ବାୟୁ କର୍ତ୍ତୃକ ବସ୍ତିଗତ ମୂତ୍ର ଓ ଶୁକ୍ର କିମ୍ବା ପିତ୍ତ ଓ କଫ ବିଶୋଷିତ ହେଲେ ତାହା ଅଶ୍ମରୀ ରୂପେ ପରିଣତ ହୁଏ । ଯେପରି ଗୋପିତ୍ତ ବାୟୁକର୍ତ୍ତୃକ ବିଶୋଷିତ ହୋଇ କ୍ରମେ କ୍ରମେ ଗୋରୋଚନା ରୂପେ ପରିଣତ ହୁଏ ।

ଶର୍କରା ଓ ଅଶ୍ମରୀରୋଗର କାରଣ ଓ ଲକ୍ଷଣ ସମାନ, ମୂତ୍ର, ଶୁକ୍ର ଓ କଫ ପ୍ରଥମେ ପିତ୍ତତେଜ ଦ୍ୱାରା ପାକପାଇ ପଛରେ ବାୟୁ ଦ୍ୱାରା ଶୁଖିଯାଇ ଏବଂ କଫ ଦ୍ୱାରା ଆକ୍ରମିତ ହେଲେ ତାହାକୁ ଅଶ୍ମରୀ କହନ୍ତି । ଏହି ଅଶ୍ମରୀ ଯଦି କୌଣସି କାରଣରୁ କଫ ସମ୍ବନ୍ଧରୁ ଛାଡ଼ିଯାଏ ତାହା ହେଲେ ଶର୍କରାପରି ସୂକ୍ଷ୍ମ ସୂକ୍ଷ୍ମ ଅଂଶରେ ପରିଣତ ହୋଇ ମୂତ୍ର ମାର୍ଗ ଦେଇ କ୍ଷରିତ ହୁଏ । ସେହି ଶର୍କରା ହେତୁ ଦାରୁଣ ମୂତ୍ରକୃଚ୍ଛ୍ର ଜାତହୁଏ । ଏହି ରୋଗରେ ହୃତ୍‌ପୀଡ଼ା କମ୍ପ, କୁକ୍ଷିଦେଶରେ ଶୂଳ, ଅଗ୍ନିମାନ୍ଦ୍ୟ, ମୂର୍ଚ୍ଛା, ଏହି ଲକ୍ଷଣ ଦେଖାଯାଏ । ଯେତେବେଳେ ଶର୍କରା ମୂତ୍ରବେଗରେ ଆସି ସ୍ରୋତମୁଖରେ ସଂଲଗ୍ନ ହୁଏ ସେ ସମୟରେ ଭୟଙ୍କର ପୀଡ଼ା ଅନୁଭୂତ ହୁଏ । କିନ୍ତୁ ମୂତ୍ର ବହିର୍ଗତ ହେଲେ ବେଦନା ଶାନ୍ତ ହୁଏ ।

**ଚିକିତ୍ସା**--ଅଶ୍ମରୀ ଅତି ଭୟଙ୍କର ବ୍ୟାଧି । ଏହା ସାକ୍ଷାତ୍ ଯମସ୍ୱରୂପ । ତରୁଣ ଅଶ୍ମରୀ ଔଷଧ ସାଧ୍ୟ, କିନ୍ତୁ ତାହା ବୃଦ୍ଧିପ୍ରାପ୍ତ ହେଲେ ଶସ୍ତ୍ର ପ୍ରୟୋଗ ଆବଶ୍ୟକ ।

(୧) ବରୁଣ ଛାଲି, ଶୁଣ୍ଠୀ, ଗୋଖରା ଏସମସ୍ତର କ୍ୱାଥରେ ଯବକ୍ଷାର ୨ ମାଷା ଓ ପୁରାତନ ଗୁଡ଼ ୨ ତୋଳା ପ୍ରକ୍ଷେପ କରି ପାନ କଲେ ଦୀର୍ଘକାଳୋତ୍ପନ୍ନ ଅଶ୍ମରୀ ଶାନ୍ତ ହୁଏ ।

(୨) ଶୁଣ୍ଠୀ, ଗନ୍ଧଣାଛାଲ, ପାଷାଣଭେଦୀ, ସଜନାଛାଲ, ଗୋଖରୁ, ବାଉଁଡ଼ା, ସୁନାରିଫଳ ଏସମସ୍ତର କ୍ୱାଥରେ ହିଙ୍ଗୁ, ଯବକ୍ଷାର ସୈନ୍ଧବ ମିଶାଇ ପାନ କଲେ ଅଶ୍ମରୀ ଓ ତଜ୍ଜନିତ ସକଳପୀଡ଼ା ଶାନ୍ତହୁଏ ।

(୩) ବରୁଣ ଛାଲର କ୍ୱାଥ ଗୁଡ଼ସହ ପାନ କଲେ ଅଶ୍ମରୀ ନିବାରିତ ହୁଏ ।

(୪) ବରୁଣ ମୂଳ ଛାଲର କ୍ୱାଥରେ ସେହି ଛାଲର ଚୂର୍ଣ୍ଣ ମିଶାଇ ପାନ କଲେ ଅଶ୍ମରୀ ବିନଷ୍ଟ ହୁଏ ।

(୫) ସଜନା ମୂଳର କ୍ୱାଥ ଈଷଦୁଷ୍ଣ ଅବସ୍ଥାରେ ପାନ କଲେ ଅଶ୍ମରୀ ବିନଷ୍ଟ ହୁଏ ।

(୬) ଗୋଖରୁ, କୋଇଲେଖା, କାଲ, ଭେଳ, ଅଙ୍କରାନ୍ତ ଏସମସ୍ତର ମୂଳ ମିଳିତ ୪ ମଷା, ଦୁଗ୍ଧଯୁକ୍ତ ବାଟି ଅମ୍ଳଦଧିରେ ଗୋଳି ପ୍ରତ୍ୟହ ୨ ଥର ୭ ଦିନ ପର୍ଯ୍ୟନ୍ତ ପାନକଲେ ଅଶ୍ମରୀ ବିନଷ୍ଟ ହୁଏ ।

(୭) ଅଳାଇଚ, ପିପ୍ପଳୀ, ଯଷ୍ଠିମଧୁ, ପାଷାଣଭେଦୀ, ରେଣୁକା, ଗୋଖରୁ ବାସଙ୍ଗ, କାଲମୂଳ ଏସମସ୍ତର କ୍ୱାଥରେ ୩।୪ ମଷା ଶିଳାଜତୁ ପ୍ରକ୍ଷେପ କରି ପାନ କଲେ ଶର୍କରା ଅଶ୍ମରୀ ଓ ମୂତ୍ରକୃଚ୍ଛ୍ର ପ୍ରଶମିତ ହୁଏ ।

(୮) ଗୋଖରୁ ବୀଜ ଚୂର୍ଣ୍ଣ ମଧୁସଂଯୁକ୍ତ କରି ମେଷଦୁଗ୍ଧ ସହ ସାତଦିନ ସେବନ କଲେ ଅଶ୍ମରୀ ବିନଷ୍ଟ ହୁଏ ।

(୯) ତାଳମୂଳୀ ବାଟି ବାସି ଜଳ ସହ ପାନ କଲେ ଅଶ୍ମରୀ ବିନଷ୍ଟ ହୁଏ ।

(୧୦) ନାରିକେଳଫୁଲ ୪ ମଷା ଜଳରେ ବାଟି ପ୍ରାତଃକାଳେ ପାନ କଲେ ଅଶ୍ମରୀ ବିନଷ୍ଟ ହୁଏ ।

**ଶାସ୍ତ୍ରୀୟ ଔଷଧ**—ପାଷାଣଭିନ୍ନରସ, ତ୍ରିବିକ୍ରମରସ, ବରୁଣାଦ୍ୟ-ଘୃତ, ବଜ୍ରକ୍ଷାର (ଲଘୁ)



# ଆମବାତ

କ୍ଷୀର ମତ୍ସ୍ୟାଦି ବିରୁଦ୍ଧ ଆହାର, ଅତିରିକ୍ତ ମୈଥୁନ, ବ୍ୟାୟାମ, ଜଳପ୍ରତରଣାଦି ବିରୁଦ୍ଧ ବିହାର, ଅଗ୍ନିମାନ୍ଦ୍ୟ ସ୍ଥିର ହୋଇ ବସିରହିବା, ସ୍ନିଗ୍ଧାନ୍ନ ଭୋଜନ କରି ବ୍ୟାୟାମ କରିବା ଏହି ସକଳ କାରଣରୁ ଆମ ଅର୍ଥାତ୍ ଅପକ୍ୱ ଆହାର ରସ ବାୟୁକର୍ତ୍ତୃକ ଆମାଶୟ ସନ୍ଧି ଆଦି କଫ ସ୍ଥାନକୁ ନୀତ ଓ ସେଠାରେ ଅତ୍ୟନ୍ତ ଦୂଷିତ ହୋଇ ଧମନୀ ସମୂହରେ ଉପସ୍ଥିତ ହୁଏ । ପରେ ସେହି ଆମଯୁକ୍ତ ଅନ୍ନରସ ବାୟୁ ପିତ୍ତ ଓ କଫ ଦ୍ୱାରା ଅଧିକ ଦୂଷିତ ଅତିପିଚ୍ଛଳ ଓ ବିବିଧ ବର୍ଣ୍ଣ ଯୁକ୍ତ ହୋଇ ସ୍ରୋତ ସକଳକୁ କ୍ଲେଦଯୁକ୍ତ କରେ । ଏହା ଦ୍ୱାରା ଶରୀର ଶୀଘ୍ର ଦୁର୍ବଳ ଓ ହୃଦୟ ଭାରାକ୍ରାନ୍ତ ହୋଇଥାଏ । ଏହି ଆମଶଙ୍କକ ବ୍ୟାଧି ଅତି ଭୟଙ୍କର ଓ ବିବିଧ ରୋଗର ମୂଳ । ଏହି ପ୍ରକାର ଆମସଂଯୁକ୍ତ ବାୟୁ ଓ କଫ ଏକ ପ୍ରକାର କୁପିତ ହୋଇ ତ୍ରିକ ଓ ସନ୍ଧିସ୍ଥଳମାନଙ୍କରେ ପ୍ରବେଶ କରି ଗାତ୍ରକୁ ସ୍ତବ୍ଧ ଚଳନଶକ୍ତି ରହିତ କରିପକାନ୍ତି । ଏହାକୁ ଆମବାତ କହନ୍ତି ।

ଅଙ୍ଗମର୍ଦ୍ଦନ, ଅରୁଚି ତୃଷା, ଆଲସ୍ୟ, ଦେହର ଗୁରୁତା, ଜ୍ୱର, ଶୋଥ, ଏହି ଗୁଡ଼ିକ ଆମବାତର ସାଧାରଣ ଲକ୍ଷଣ । ଆମବାତ କୁପିତ ହେଲେ ସକଳ ରୋଗାପେକ୍ଷା ଅଧିକ କଷ୍ଟଦାୟକ ହୁଏ । ଏହାଦ୍ୱାରା ହସ୍ତ ପଦ ମସ୍ତକ ଗୁଲ୍ଫ ତ୍ରିକ ଜାନୁ ଉରୁ ଓ ସନ୍ଧିସ୍ଥଳମାନଙ୍କରେ ବେଦନା-ଯୁକ୍ତ ଶୋଥ ଉତ୍ପନ୍ନ ହୁଏ ଏବଂ ସେହିଦୁଷ୍ଟ ଆମ ଯେଉଁ ସ୍ଥାନକୁ ଆଶ୍ରୟ କରେ ସେହି ସ୍ଥାନରେ ବୃଶ୍ଚିକ ଦଂଶନ ପରି ଅତ୍ୟନ୍ତ ଯାତନା ଅନୁଭୂତ ହୁଏ । ଏହି ରୋଗରେ ଅଗ୍ନିଦୌର୍ବଲ୍ୟ ମୁଖ ଓ ନାସାମାର୍ଗରୁ ଜଳସ୍ରାବ, ଅରୁଚି, ଦେହର ଗୁରୁତା, ଉତ୍ସାହହାନୀ, ମୁଖବୈରସ୍ୟ, ଦାହ, ବହୁମୂତ୍ର କୁକ୍ଷିଦେଶରେ ଶୂଳ ଓ କଠିନତା, ନିଦ୍ରାବିପର୍ଯ୍ୟୟ ତୃଷା, ବମନ,

ଭ୍ରମ, ମୂର୍ଚ୍ଛା, ହୃଦୟ ବ୍ୟଥା, ମଳବଦ୍ଧତା, ଶରୀରର ସ୍ତବ୍ଧତା, ଅନ୍ତ୍ରକୂଜନ ଅନାହ ଇତ୍ୟାଦି ବିବିଧ କଷ୍ଟପ୍ରଦ ଉପଦ୍ରବ ଉପସ୍ଥିତ ହୁଏ । ପୈତ୍ତିକ ଆମବାତରେ ଗାତ୍ରଦାହ ଓ ଶରୀର ରକ୍ତବର୍ଣ୍ଣ ହୁଏ । ବାତଜ ଅମବାତରେ ଶୂଳପରି ବେଦନା ଏବଂ କଫଜ ଅମବାତରେ ସ୍ତବ୍ଧତା ଗୁରୁତା ଓ କଣ୍ଡୁ ଉପସ୍ଥିତ ହୁଏ ।

**ଚିକିତ୍ସା**—ଆମବାତ ରୋଗରେ ଲଙ୍ଘନ, ସ୍ୱେଦକ୍ରିୟା, ତିକ୍ତକଟୁ ଓ ଅଗ୍ନିଦୀପକ ଆହାର, ବିରେଚନ ସ୍ନେହପାନ କର୍ତ୍ତବ୍ୟ । ଏଥିରେ ବାଲି କନାରେ ବାନ୍ଧି ତାହାକୁ ଉତ୍ତପ୍ତ କରି ତଦ୍ୱାରା ରୋଗୀକୁ ରୁକ୍ଷସ୍ୱେଦ ଦେବ ଓ ସ୍ନେହ ବର୍ଜିତ ଉଷ୍ଣ ଲେପ ଦେବ ।

(୧) କପାମଞ୍ଜି, କୋଳଥ, ରାଶି, ଯବଧାନ, ରଙ୍ଗକାଲି ମୂଳ, ତଳା ଶେତପୁରୁଣୀ, ଛଣିମଞ୍ଜି, ସଜନାମଞ୍ଜି, ଏସମସ୍ତକୁ କୁଟି କାଞ୍ଜିପାଣିରେ ଓଦାକରି କନାରେ ବାନ୍ଧି ୨ଟି ପୋଟଳୀ କରିବ । ଚୂଲି ଜାଳି ତା ଉପରେ କାଞ୍ଜିପାଣି ପୂର୍ଣ୍ଣହାଣ୍ଡି ଟିଏ ବସାଇ ତା ଉପରେ ବହୁରନ୍ଧ୍ରଯୁକ୍ତ ତେଲୁଣୀଟିଏ ଉର୍ଦ୍ଧ୍ୱମୁଖରେ ରଖି ଉଭୟର ସନ୍ଧିସ୍ଥଳ ମୃତ୍ତିକା ଲିପ୍ତ କରିବ । ଉପରୋକ୍ତ ପୋଟଳୀଦ୍ୱୟ ଏହି ତେଲୁଣୀ ଉପରେ ଥୋଇ ଉତ୍ତପ୍ତ କରି ଗୋଟିଏ ପୋଟଳୀ ନେଇ ରୋଗୀର କୂର୍ପର, ଉଦର, ମସ୍ତକ, ତ୍ରିକ୍, ହସ୍ତ, ପଦ, ଅଙ୍ଗୁଳି, ଗୁଳ୍ଫ, ସ୍କନ୍ଧ, କଟୀ, ଇତ୍ୟାଦି ସ୍ଥାନରେ ସ୍ୱେଦଦେବ । ଗୋଟିଏ ପୋଟଳୀ ଶୀତଳ ହେଲେ ପୁନର୍ବାର ଉତ୍ତପ୍ତ କରିବାକୁ ତେଲୁଣୀ ଉପରେ ରଖି ଅନ୍ୟଟି ଦ୍ୱାରା ସ୍ୱେଦ ଦେବ । ଏତଦ୍ୱାରା ଆମବାତର ବେଦନା ଶୀଘ୍ର ଶାନ୍ତ କରିଦଏ ।

(୨) ପିପ୍ପଳୀ, ପିପ୍ପଳୀମୂଳ, ଗୁଳୁଂଚକାଠ, ଚିତ୍ରମୂଳ ଶୁଣ୍ଠୀ ଏହି ପାଞ୍ଚଟିର କ୍ୱାଥସହ ଅନ୍ନ ପାନ ସିଦ୍ଧ କରି ରୋଗୀକି ଖାଇବା ସକାଶେ ଦେବ ।

(୩) ସତ୍ରୁପ, ବଚ, ଶୁଣ୍ଠୀ, ଗୋଖର, ଚକୁଣଫଳ, ବଜ୍ରମୂଳୀ, ଶ୍ୱେତ-ପୁରୁଣୀ, ଗନ୍ଧଶୁଣ୍ଠୀ, ପଶାରୁଣୀ, ଜୟନ୍ତୀମୂଳ, ହିଙ୍ଗୁ ଏ ସକଳ ଦ୍ରବ୍ୟ କାଞ୍ଜି-ପାଣି ସହ ବାଟି ଅଳ୍ପ ଉଷ୍ଣ କରି ପ୍ରଲେପ ଦେଲେ ଆମବାତ ବ୍ୟଥା ଦୂର ହୁଏ ।

(୪) କୋଳକେଶା, ସଜନାଛାଲ ଉଲଟକମ୍ବଳ ଏସମସ୍ତ ଗୋମୂତ୍ରରେ ବାଟି ଉଷ୍ଣ କରି ଲେପିଲେ ଆମବାତ ଶାନ୍ତ ହୁଏ ।

(୫) ଚିତ୍ରକ ମୂଳ, କାଟୁକୀ, ଅକାଳବନ୍ଧ, ଇନ୍ଦ୍ରଯବ, ଅଭୁଶୀ, ଗୁଳୁଚୀ ଏମାନଙ୍କର ଚୂର୍ଣ୍ଣ ଉଷ୍ଣଜଳ ସହ ପାନ କଲେ ଆମବାତ ଶାନ୍ତହୁଏ ।

(୬) ବଚ, ମୁଥା, ଶୁଣ୍ଠୀ, ଅଭୁଶୀ ହରିଡ଼ା ଏସକଳର ଚୂର୍ଣ୍ଣ ଉଷ୍ଣ ଜଳ ସହ ସେବନ କଲେ ଆମବାତ ଦୂରହୁଏ ।

(୭) ରାସ୍ନା, କାଳମୂଳ, ରକ୍ତଚନ୍ଦନ, ପିପିଳାମୂଳ, ସୈନ୍ଧବ ଏସମସ୍ତ କଳାଦୁଦୁରାପତ୍ର ରସରେ ବାଟି ଲେପଦେଇ ପସିନାଅଁ ଦେଖାଇଲେ ଆମବାତ ବ୍ୟଥା ଶାନ୍ତହୁଏ ।

(୮) ଶ୍ୱେତପୁରୁଣୀର କ୍ୱାଥରେ ଗନ୍ଧଶୁଣ୍ଠୀ ଓ ଶୁଣ୍ଠୀ ପ୍ରକ୍ଷେପ କରି ତାହା ସପ୍ତାହପର୍ଯ୍ୟନ୍ତ ସେବନ କଲେ ଆମବାତ ବିନଷ୍ଟ ହୁଏ ।

(୯) ଇନ୍ଦ୍ରଯବଚୂର୍ଣ୍ଣ ୧୬ ମଷା, ସୈନ୍ଧବ ୬ ମଷା ଶୁଣ୍ଠୀଚୂର୍ଣ୍ଣ ୬ ମଷା ଏକତ୍ର ମିଶାଇ ଏକତ୍ର ପାନକଲେ ଆମବାତ ଶାନ୍ତହୁଏ ।

(୧୦) ଶୁଣ୍ଠୀ ୧ ଭାଗ ଗୋଖରୁ ୨ ଭାଗ ଏ ଉଭୟର କ୍ୱାଥରେ ଯବକ୍ଷାର ପ୍ରକ୍ଷେପ କରି ପାନକଲେ ଆମବାତ ଓ କଟିଶୂଳ ଶାନ୍ତ ହୁଏ ।

(୧୧) ଦଶମୂଳ ବା ଶୁଣ୍ଠୀ କ୍ୱାଥ ସହ ଏରଣ୍ଡତୈଳ ପାନ କଲେ ଆମବାତ ଦୂରହୁଏ ।

(୧୨) ହରିଡ଼ାଚର୍ଣ୍ଣ, ଏରଣ୍ଡତୈଳ ସହ ଲେପିଲେ ଆମବାତ ଦୂର ହୁଏ ।

**ଶାସ୍ତ୍ରୀୟ ଔଷଧ**—ବାତକୁଳାନ୍ତକ, ସିଂହନାଦ ଗୁଗ୍ଗୁଲୁ, ମହା ରସୋନପିଣ୍ଡ, ବାତଗଜେନ୍ଦ୍ରସିଂହ, ତ୍ରିଫଳାଦିଲୌହ ପ୍ରସାରଣୀତୈଳ ଶୁଣ୍ଠୀଘୃତ, ଯୋଗରାଜ ଗୁଗ୍ଗୁଲୁ ।

## ଉଦରରୋଗ

ଅଗ୍ନିମାନ୍ଦ୍ୟ ହେତୁ ଉଦର ରୋଗ ଜାତହୁଏ । ଅଜୀର୍ଣ୍ଣ, ମଳିନ ଅନ୍ନ ଭୋଜନ ଅତ୍ୟନ୍ତ ଦୋଷଜନକ ବିରୁଦ୍ଧ ଭୋଜନ, ପୂର୍ବାହାର ଅଜୀର୍ଣ୍ଣସତ୍ତ୍ୱେ ପୁନର୍ଭୋଜନ, ମଳସଞ୍ଚୟ, ଏହିଗୁଡ଼ିକ ଉଦରରୋଗ ଜନ୍ମର କାରଣ । ସଞ୍ଚିତ ବାତାଦିଦୋଷ ସକଳ ସ୍ୱେଦବହ ଓ ଅମ୍ବୁବହ ସ୍ରୋତଃସମୂହକୁ ରୁଦ୍ଧ କରି ପ୍ରାଣବାୟୁ ଅପାନବାୟୁ ଓ ଜଠରାଗ୍ନିକି ଦୂଷିତ କରି ଉଦରରୋଗ ଉତ୍ପାଦନ କରେ । ଉଦରାଧ୍ମାନ, ଗମନେ ଅଶକ୍ତି, ଦୌର୍ବଲ୍ୟ, ଅଳସ୍ୟ ଅଗ୍ନିମାନ୍ଦ୍ୟ, ଶୋଥ, ଅଙ୍ଗସକଳର ଅବସାଦ, ଅଧୋବାୟୁ ଓ ମଳର ଅପ୍ରବୃତ୍ତି ଦାହ, ତନ୍ଦ୍ରା, ଏହିଗୁଡ଼ିକ ସକଳପ୍ରକାର ଉଦରରୋଗର ସାଧାରଣ ଲକ୍ଷଣ ।

**ଚିକିତ୍ସା**—ଅଗ୍ନିଉଦ୍ଦୀପନ, ଲଘୁ ଆହାର ଓ ବିରେଚନ ଏହି ରୋଗରେ ପ୍ରଧାନରୂପେ ବ୍ୟବସ୍ଥାର ବିଷୟ ଅଟେ ।

(୧) ଗୋମୂତ୍ର କିମ୍ବା ଉଷ୍ଣଦୁଗ୍ଧସହ ଏରଣ୍ଡତୈଳ ପାନ କରାଇ ଉଦର ରୋଗୀକି ବିରେଚନ କରାଇବ ।

(୨) କୁଡ଼, ଦନ୍ତୀ, ଯବକ୍ଷାର, ଶୁଣ୍ଠୀ ପିପ୍ପଳୀ, ମରିଚ, ସୈନ୍ଧବ, ବିଟ ଓ ସଚଳଲବଣ, ବଚ, କଳାଜୀରା, ଯୁଆଣୀ, ହିଙ୍ଗୁ, ସାଚିକ୍ଷାର, ଶୁଇଁକାଠ, ଚିତାମୂଳ ଏସମସ୍ତର ସମଭାଗ ଚୂର୍ଣ୍ଣ ଉଷ୍ଣଜଳସହ ପାନକଲେ ଉଦର ଶାନ୍ତହୁଏ ।

(୩) ଶଙ୍ଖଶାସ୍ତ୍ରୋକ୍ତ ବିଧାନାନୁସାରେ ଅସ୍ତ୍ରଦ୍ୱାରା ଜଳବାହାର କରି ଜଳୀୟ ଦ୍ରବ୍ୟ ଭୋଜନ ପରିତ୍ୟାଗ ପୂର୍ବକ ଗୋମୂତ୍ର ଓ ଚିତ୍ରକ ଚୂର୍ଣ୍ଣ ପାନକଲେ ଉଦର ଶାନ୍ତହୁଏ ।

(୪) ଦେବଦାରୁ, ପଳାଶଫଳ, ଅର୍କମୂଳ, ଗଜପିପ୍ପଳୀ, ସଜନାଛାଲି ଅଶ୍ୱଗନ୍ଧା ଏ ସମସ୍ତ ଗୋମୂତ୍ରରେ ବାଟି ଲେପିଲେ ଉଦର ଶାନ୍ତ ହୁଏ ।

(୫) ସିଜୁକ୍ଷୀର ଦ୍ୱାରା ପିପ୍ପଳୀକୁ ୨୧ବାର ଭାବନାଦେଇ ସେହି ପିପ୍ପଳୀ କ୍ରମବୃଦ୍ଧି ନିୟମରେ ସେବନ କରି ପ୍ରତିଦିନ ଦୁଗ୍ଧପାନ କରିବ । ଏହିପରି ୧୦୦୦ ପିପ୍ପଳୀ ସେବନ କଲେ ଉଦର ଶାନ୍ତ ହୁଏ । ପିପ୍ପଳୀ ସେବନ ସମୟରେ ମଧ୍ୟମଧ୍ୟରେ ଝାଡ଼ାହେଲେ ପିପ୍ପଳୀ ସେବନ କେତେଦିନ ବନ୍ଦକରି ପୁନଃସେବନ କରିବ । ଶିଳାଜତୁ, ଗୋମୂତ୍ର,ହରିଡ଼ା, ବାହାଡ଼ା ଅଁଳା, ଗୁଗ୍ଗୁଳ, ସିଜୁକ୍ଷୀର ଏ ସମସ୍ତରୁ ଯେ କୌଣସିଟି ବା ସମସ୍ତ ପ୍ରତ୍ୟହ ସେବନ କରିବା ଅଭ୍ୟାସ କରି ପଥ୍ୟରେ ରହିଲେ ଉଦର ଶାନ୍ତ ହୁଏ ।

**ଶାସ୍ତ୍ରୀୟ ଔଷଧ**—ଶୋଥୋଦରାରିଲୌହ, ନାରାଚରସ, ଇଚ୍ଛାଭେଦୀ, ଜଳୋଦରାରି, ତ୍ରିଫଳାଦ୍ୟଲୌହ, ବିନ୍ଦୁଘୃତ, ନାରାଚଘୃତ ରସୋନତୈଳ ।

## ଉନ୍ମାଦ

ଅତିଶୟ ଶୋକ, ଧନନାଶ ଦୁଶ୍ଚିନ୍ତା, ବିଷ ଖାଇବା, ମସ୍ତକରେ ଆଘାତ ଲାଗିବା, ପୁରୁଷର ଶୁକ୍ରକ୍ଷୟ ଓ ସ୍ତ୍ରୀର ଋତୁ ଗୋଳମାଳ ପ୍ରଭୃତି କାରଣରୁ ବାୟୁ ବିକୃତ ହୋଇ ମସ୍ତିଷ୍କ ଗରମ କରି ଉନ୍ମାଦ ରୋଗ ଜାତକରେ । ଶ୍ଳେଷ୍ମଦୋଷ ଓ ବାତ ଶ୍ଳେଷ୍ମ ଦୋଷରୁ ରୋଗ ଜାତ ହେଲେ ରୋଗୀ ଭ୍ରମଯୁକ୍ତ ଓ ନିଶ୍ଚଳ ରହେ । କଥା କହିବାକୁ ବା ଲୋକ ମଧ୍ୟକୁ ଯିବାକୁ ଭଲପାଏ ନାହିଁ । ଏକ ଦୃଷ୍ଟିରେ ଅନ୍ୟମନସ୍କ

ହୋଇଥାଏ । ବହୁତ ସମୟ ପର୍ଯ୍ୟନ୍ତ ଚାହିଁ ହଠାତ୍ କେତେକ ଅସମ୍ବନ୍ଧ କଥାକହେ ଅଥବା ହସେ । ଶୋଇଲେ ଉଠିବାକୁ ଇଚ୍ଛା କରେ ନାହିଁ । ଉଠିଲେ ଶୋଇବାକୁ ଇଚ୍ଛାକରେ ନାହିଁ । ଏହି ଉନ୍ମାଦ ଥଣ୍ଡା ଲାଗିଲେ ବୃଦ୍ଧିପାଏ ।

(୧) ପୁରାତନ ଘୃତ ୫ ରତି, ବାହାଡ଼ା ମଞ୍ଜୀରସ ୨୧ ରତି, ମକରଧ୍ୱଜ ଏକରତି, ମଧୁ ୫ ରତି, ମିଶ୍ରି ୧୦ ରତି ଏସମସ୍ତ ଏକତ୍ର ମର୍ଦ୍ଦନ କରି ସେବନ କରିବ ଓ ଅର୍ଦ୍ଧସେର ଯାବଜ୍ଜୀଷ୍ଟ ଦୁଗ୍ଧ ପାନ କରିବ । ଏପରି କେତେ ଦିନ ଅଭ୍ୟାସ କଲେ ଉନ୍ମାଦ ଶାନ୍ତହୁଏ ।

(୨) ବ୍ରାହ୍ମୀଶାକରସ ୪ ତୋଳା, କଷ୍ମାଣ୍ଡ ଫଳପାରସ ୨ ତୋଳା, ତାଲମୂଳୀରସ ୨୦ ତୋଳା, ତେଲ ୨ ତୋଳା ନବନୀତ ୨ ତୋଳା ଏସମସ୍ତ ମିଶାଇ ଖାଇଲେ ଉନ୍ମାଦ ଶାନ୍ତ ହୁଏ ।

(୩) ବାୟୁଜନିତ ଉନ୍ମାଦରେ ଝାଡ଼ା ପରିଷ୍କାର କରିବା ଓ ନିଦ୍ରା ଜନ୍ମାଇବା ପ୍ରଧାନ ଚିକିତ୍ସା ।

(୪) ଶ୍ଳେଷ୍ମା ଓ ବାତଶ୍ଳେଷ୍ମାଜନିତ ଉନ୍ମାଦରେ ପକ୍ଷାଘାତର ପରି ଚିକିତ୍ସାକର୍ତ୍ତବ୍ୟ ।

**ଶାସ୍ତ୍ରୀୟ ଔଷଧ-** ବାତଚିନ୍ତାମଣି, ତ୍ରୈଲୋକ୍ୟଚିନ୍ତାମଣି, ମହା-ବ୍ରାହ୍ମୀଘୃତ, ମହାଚୈତନସଘୃତ, ଶିବାଘୃତ, ଅଶ୍ୱଗନ୍ଧାଘୃତ, ମଧ୍ୟମନାରାୟଣ ତୈଳ, ମହାନାରାୟଣତୈଳ, ହିମସାଗରତୈଳ, ବୃହଚ୍ଛାଗଳାଦିଘୃତ ।

—∘○∘—

## ଉପଦଂଶ

ଅତ୍ୟନ୍ତ ଅନୁରାଗ ବା କଳହାଦି ବଶତଃ ଲିଙ୍ଗରେ ହସ୍ତ ବା ନଖଦନ୍ତାଦିର ଆଘାତ, ଲିଙ୍ଗ ଅପ୍ରକ୍ଷାଳନ, ଅଧିକ ମୈଥୁନ, ଦୁଷ୍ଟଯୋନି

ଗମନ, କ୍ଷାର ମିଶ୍ରିତ ଉଷ୍ଣଜଳରେ ପ୍ରକ୍ଷାଳନ । ବ୍ରହ୍ମଚାରିଣୀଗମନାଦି ଅବୈଧ ଅପରାଧର ହେତୁ ଉପଦଂଶ ରୋଗ ଜାତ ହୁଏ । ଲିଙ୍ଗଉପରେ ନାନା ପ୍ରକାର କ୍ଷତ ଜାତ ହେବା ଏହାର ପ୍ରଧାନ ଲକ୍ଷଣ । ଏହା ସ୍ତ୍ରୀଠାରୁ ପୁରୁଷକୁ ଏବଂ ପୁରୁଷଠାରୁ ସ୍ତ୍ରୀକୁ ସଂକ୍ରାମଣ କରେ ଏବଂ ସ୍ଥାନେ ସ୍ଥାନେ ବଂଶପରଂପରା କ୍ରମେ ଏହା ଜାତ ହୋଇଥାଏ ।

ସଂସର୍ଗରୁ ଜାତ ହୋଇଥିବା ଉପଦଂଶ କୁସଙ୍ଗର ଏକଦିନ ବା ଦୁଇଦିନ ବା ତିନିଦିନ ପରେ ଅଥବା ୨ । ୩ ସପ୍ତାହ ପରେ ଲିଙ୍ଗର ମୁଖରେ ବା ତାହାର ଆବରକ ଚର୍ମ ଉପରେ ଏବଂ ସ୍ତ୍ରୀର ପ୍ରସାବ ଦ୍ୱାରରେ ସ୍ଫୋଟକ ନିର୍ଗତ ହୁଏ । ବଗଲରେ ବେଦନା, ଜ୍ୱରଭର ବୋଧ, ଅଗ୍ନିମାନ୍ଦ୍ୟ, ମୁଖରେ ଦୁର୍ଗନ୍ଧ ବା ସ୍ୱାଦହୀନତା, ଶରୀର ଭାର ବୋଧ ଶିରଃପୀଡ଼ା, ଝୁର୍ବଳ୍ପନତା, ଇତ୍ୟାଦି ଲକ୍ଷଣ ପ୍ରଥମରେ ପ୍ରକାଶ ପାଇଥାଏ ।

ଦ୍ୱିତୀୟାବସ୍ଥା—ଚିକିତ୍ସା ବା ପଥ୍ୟାଦି ଦ୍ୱାରା ପ୍ରଥମ ଉପସର୍ଗଗୁଡ଼ିକ ଅଦର୍ଶନ ହେଲେ କେତେକ ସ୍ଥାନରେ ନିମ୍ନଲିଖିତ ଲକ୍ଷଣଗୁଡ଼ିକ ପ୍ରକାଶ ପାଇଥାଏ । ଗାତ୍ରରେ ତାମ୍ରବର୍ଣ୍ଣର ଛୋଟ ବଡ଼ ନାନାପ୍ରକାର ଚକାଚକା ଚିହ୍ନ ଚକ୍ଷୁପୀଡ଼ା, କଣ୍ଡୁ, କେଶ ଓ ଲୋମମୂଳର ଶିଥିଳତା, ବଙ୍କ୍ଷଣ ଦେଶରେ ଶୋଥ, ଇତ୍ୟାଦି ଦେଖାଯାଏ ।

ତୃତୀୟାବସ୍ଥା—ନାଡ଼ୀବ୍ରଣ, ଅସ୍ଥିମଧ୍ୟରେ ବ୍ୟଥା, ବାତରୋଗ, ଭୟାନକ ଚକ୍ଷୁରୋଗ, ପକ୍ଷାଘାତ, କୁଷ୍ଠ, ବାତରକ୍ତ, ଅସ୍ଥିବକ୍ରତା, ପୀନସ, କେଶପାତ, ଲୋମପାତ, ନାନାପ୍ରକାର ମୂତ୍ରରୋଗ, ଯକୃତ ଦୋଷ । ଇତ୍ୟାଦି ଜାତ ହୋଇଥାଏ ।

**ଚିକିତ୍ସା**—(୧) କ୍ଷତସ୍ଥାନ ନିମପତ୍ର ସିଦ୍ଧ ଗରମ ଜଳ ଓ ସାବୁନ ଦ୍ୱାରା ଧୋଇ କଞ୍ଚା ହଳଦୀ ରସରେ ନିମପତ୍ର ବାଟି ଲେପିବ ।

(୨) ଗୋଟିଏ କଟାହରେ ହରଡ଼ା ବାହାଡ଼ା ଅଁଳା ସମ ଭାଗରେ ରଖି ତାହା ଉପରେ ଶରା ଘୋଡ଼ାଇ ତଳେ ଜାଳ ଦେଇ ତାହା ଅନ୍ତର୍ଧୂମ ଦଗ୍ଧ କରିବ । ସେହି ଭସ୍ମ ମଧୁସହ ବାଟି କ୍ଷତରେ ଲଗାଇଲେ କ୍ଷତ ଶୁଖିଯାଏ ।

(୩) ଯାଠିମଧୁ ସରଳକାଠ, ଦେବଦାରୁ, ରାସ୍ନା, କୁଡ଼, ଛୋଟ ଅଳାଇଚ ଏସମସ୍ତର କଳ୍କ ଲେପିଲେ ଅଥବା ଏସମସ୍ତର କ୍ୱାଥ ଦ୍ୱାରା ଧୋଇଲେ ଉପଦଂଶ କ୍ଷତ ଶୁଷ୍କ ହୁଏ ।

(୪) ଉପଦଂଶ ରୋଗରେ ଲିଙ୍ଗ ପାଚିଲେ ଜୟନ୍ତୀ, ଜାତି କଣିସୂର, ଅର୍ଖ, ସୁନାରି ଏସମସ୍ତର ପତ୍ରର କ୍ୱାଥ ଦ୍ୱାରା ଲିଙ୍ଗ ପ୍ରକ୍ଷାଳନ କରିବ ।

(୫) ଦାରୁ ହଳଦୀ, ନାଗଶଙ୍ଖ, ରସାଞ୍ଜନ, ଜଉ, ଗୋବର ରସ ତୈଳ, ମଧୁ ଘୃତ ଦୁଗ୍ଧ ଏସମସ୍ତ ଦ୍ରବ୍ୟର ପ୍ରଲେପ ଦେଲେ କ୍ଷତ ଶୁଖିଯାଏ ।

## ଶାସ୍ତ୍ରୀୟ ଔଷଧ—

ସୋମରାଜ ତୈଳ, ବୃହତ୍ ମରିଚ୍ୟାଦ୍ୟ ତୈଳ, ମହାତିକ୍ତ ଘୃତ ଉପଦଂଶ କୁଠାର, ଗନ୍ଧକ ରସାୟନ, ବୈରେଚ ରସ, ନୃସିଂହଗୁଗ୍ଗୁଳୁ, କୋଷାତକୀ ତୈଳ, କରଞ୍ଜାଦ୍ୟ ଘୃତ ।



# କାସ

ସର୍ବଦା ଧୂଳ ଓ ଧୂମ ନାସିକା ମଧ୍ୟରେ ପ୍ରବିଷ୍ଟ ହୋଇ ଉପସ୍ଥିତ ଛିଙ୍କର ବେଗକୁ ହଠାତ୍ ବନ୍ଦ କରେ । ଶକ୍ତିବହିର୍ଭୂତ ଅଙ୍ଗଗ୍ଳଳନା, ଶ୍ୱାସନାଳୀ ମଧ୍ୟରେ ରୁକ୍ଷ ଦ୍ରବ୍ୟର ପ୍ରବେଶ, କୃମି ପ୍ରାଦୁର୍ଭାବ, ପେଟଗରମ ହେବା, କଣ୍ଠସନ୍ଧି ହଠାତ୍ ଶୁଖିଇ ଦେବା, ଅତିରକ୍ତ ଶୁକ୍ରକ୍ଷୟ, ଇତ୍ୟାଦି କାରଣରୁ କାସ ଜାତ ହୁଏ ।

(୧) କବାବ ଚିନି, ବଡ଼ ଅଳାଇଚ ତୁଳସୀମଞ୍ଜରୀ, ମିଶ୍ରି ଏସମସ୍ତ ଏକତ୍ର ବାଟି କଳରେ ଖାଇଲେ କାସ ବନ୍ଦ ହୁଏ ଓ ଶୁଷ୍କ କଫ ତରଳ ହୋଇ ବାହାରେ ।

(୨) ବଚ, ଯଷ୍ଟିମଧୁ, ପିପ୍ପଳୀ, ଶୁଣ୍ଠ ଏସମସ୍ତର ଚୂର୍ଣ୍ଣ ଏକଅଣା ମାତ୍ରାରେ ପ୍ରତ୍ୟହ ୨ । ୩ ବାର ମଧୁ ସହ ଲେହିଲେ କାସ ଶାନ୍ତ ହୁଏ ।

(୩) କନ୍ଦଲପାନ, କଳାତୁଳସୀପତ୍ର, ଅଦା, ଅଳ୍ପ କର୍ପୂର, ଲବଙ୍ଗ ଏସମସ୍ତ ଦିନକେ ୨ । ୩ ବାର ଚୋବାଇ ଖାଇଲେ ଶ୍ୱାସ-ନାଳୀରୁ ଶ୍ଳେଷ୍ମା ବାହାରି ଆସେ, ଛାତିର ଭାର ଊଣା ହୁଏ ଓ କାସ ବନ୍ଦ ହୁଏ ।

(୪) ବଂଶଲୋଚନା ୨ ରତି, ପିପ୍ପଳୀଚୂର୍ଣ୍ଣ ୨ ରତି, ଗନ୍ଧକଚୂର୍ଣ୍ଣ ୧ ରତି ଟାଙ୍ଗଣା ଖଇ ୧ ରତି ଅର୍ଶମୂଳର ଚୂର୍ଣ୍ଣ ୧ ରତି ଏସମସ୍ତ ଏକତ୍ର ମଧୁସହ ଲେହିଲେ ବାତଜ କାସ ଓ ଶବ୍ଦଯୁକ୍ତ ଶ୍ଳେଷ୍ମପୂର୍ଣ୍ଣ କାସ ଶାନ୍ତ ହୁଏ ।

(୫) ଯଷ୍ଟିମଧୁ ୨ ଭାଗ, ଭେଙ୍ଗି ୨ ଭାଗ, ପିପ୍ପଳୀ ୧ ଭାଗ, ତୁଳସୀ ମଞ୍ଜରୀ ୧ ଭାଗ, ଏ ସକଳ ଏକତ୍ର କୁଟି ଜଳରେ ସିଦ୍ଧ କରି କ୍ୱାଥ ଗ୍ରହଣ କରିବ । ଏହି କ୍ୱାଥରେ ବଚ ଚୂର୍ଣ୍ଣ ଓ ମିଶ୍ରି ମିଶାଇ

ପୁନରପି ପାକ କରି ଘନ କରିବ । ଏହା ୪ଅଣା ଠାରୁ ୮ ଅଣା ପର୍ଯ୍ୟନ୍ତ ମାତ୍ରାରେ ଗରମ ଜଳ ଅନୁପାନ ସହ ଦିନକେ ୨ । ୩ ବାର ସେବନ କଲେ ସମସ୍ତ ପ୍ରକାର କାସ ଶାନ୍ତ ହୁଏ ।

## ଶାସ୍ତ୍ରୀୟ ଔଷଧ—

**ପୁଷ୍କରାଦି** ଚୂର୍ଣ୍ଣ, ତାଳୀଶାଦିଚୂର୍ଣ୍ଣ, କାସାରିଗୁଡ଼ିକା, କାଶକୁଠାର, ଶୃଙ୍ଗାରାଭ୍ର, ସାର୍ବଭୌମ, ଚନ୍ଦ୍ରାମୃତ, ଲକ୍ଷ୍ମୀବିଳାସ, ଚ୍ୟବନପ୍ରାଶ ।

—୦)୦(୦—

## କୁଷ୍ଠ

ଭୟଙ୍କର ପାପାଚରଣ ହେତୁ ପୂର୍ବଜନ୍ମ ଦୁଷ୍କୃତରୁ ଦେବଦ୍ବିଜଗୁରୁଙ୍କ ଅଭିଶାପରୁ ଓ କୁଷ୍ଠରୋଗୀର ସହବାସ ହେତୁ କୁଷ୍ଠରୋଗ ଜାତ ହୁଏ । ଏହା ଅତି ଭୟଙ୍କର ବ୍ୟାଧି ଓ ଦୁଃସାଧ୍ୟ । ଏହାର ପ୍ରାରମ୍ଭ କାଳରୁ ସାବଧାନ ନ ହେଲେ ଚିରଜୀବନ ଅକର୍ମଣ୍ୟ ଘୃଣ୍ୟ ଓ କଷ୍ଟମୟ ହୋଇପଡ଼େ ।

**ଚିକିତ୍ସା**—ଦେବପୂଜା, ଶୁଦ୍ଧାଚାର, ବ୍ରହ୍ମଚର୍ଯ୍ୟ, ତପସ୍ୟା, ତୀର୍ଥବାସ, ଇତ୍ୟାଦି ପବିତ୍ରକାର୍ଯ୍ୟରେ ରତ ହୋଇ ଶାସ୍ତ୍ରୋକ୍ତ ଔଷଧ ସେବନ କଲେ ଉପକାର ଦର୍ଶେ ।

(୧) କୁଷ୍ଠର ଆରମ୍ଭ ଅବସ୍ଥାରେ ବମନ ବିରେଚନ ଦ୍ୱାରା ଶୁଦ୍ଧ-କାୟ ହୋଇ ପ୍ରତ୍ୟହ ୨ ବେଳା ଉତ୍ତମ ଶୁଦ୍ଧ ଦୋଷ ବର୍ଜିତ ପାରଦ ଗନ୍ଧକ କଜ୍ଜଳୀ ୨ରତି ମାତ୍ରାରେ ପାଉସେର ଗୋମୂତ୍ରସହ ପାନ କରି କ୍ଷୀର ଭାତ କେବଳ ପଥ୍ୟ କରି ଏକମାସ ରହିଲେ ରକ୍ତ ଶୁଦ୍ଧ ହୁଏ ।

(୨) ମନଃଶିଳାକୁ ଭଲଆ କ୍ଷୀରସହ ମର୍ଦ୍ଦନ କରି ଚଣାପରି ବଟିକା କରିବ । ଏହି ବଟିକା ପ୍ରାତଃ ଓ ସନ୍ଧ୍ୟାରେ ଛଚିନାପତ୍ର ରସ ସହ ସେବନ କଲେ କୁଷ୍ଠ ଦୋଷ ଦୂର ହୁଏ ।

(୩) ଶୁଦ୍ଧ ବଣପଲ୍ଲୀ ହରିତାଳଭସ୍ମ ଶାସ୍ତ୍ରୋକ୍ତ ବିଧାନରେ ସେବନ କଲେ କୁଷ୍ଠ ଶାନ୍ତ ହୁଏ ।

## ଶାସ୍ତ୍ରୀୟ ଔଷଧ-

ପଞ୍ଚତିକ୍ତଘୃତ, ପଞ୍ଚତିକ୍ତଗୁଗ୍ଗୁଳୁ, କୁଷ୍ଠାନ୍ତକ, ମାଣିକ୍ୟରସ, ମହାରୁଦ୍ର ଗୁଡୂଚୀତୈଳ, ଗନ୍ଧକ ରସାୟନ, ଅମୃତପିତ୍ତକୁଠାର ।

—୦(୦)୦—

# କୃମି ରୋଗ

ଦେହର ମଳ ଓ ସ୍ୱେଦରୁ ବାହ୍ୟକୃମି, ମଧୁର ଅମ୍ଳ ଦ୍ରବ୍ୟ ଗୁଡ଼ପିଷ୍ଟକ ପ୍ରଭୃତି ଭକ୍ଷଣ ଦ୍ୱାରା ପୁରୀଷଜ କୃମି, କ୍ଷୀର, ଦଧି, ଶୁକ୍ତ ପ୍ରଭୃତି ଭକ୍ଷଣ ଦ୍ୱାରା କଫଜକୃମି, କ୍ଷୀର ମତ୍ସ୍ୟାଦି ବିରୁଦ୍ଧ ଭୋଜନଦ୍ୱାରା ରକ୍ତଜକୃମି ଜାତ ହୁଅନ୍ତି । କେଉଁ କୃମି କେଉଁ ପ୍ରକାର ଉପଦ୍ରବ ଜାତ କରନ୍ତି ତାହା ବିସ୍ତୃତ କରିହେବ ନାହିଁ । କିନ୍ତୁ ଜ୍ୱର ଶୂଳ ହୃଦ୍ରୋଗ ଅବସାଦ ଭ୍ରମ ଅନ୍ନଦ୍ୱେଷ ଅତିସାର ଇତ୍ୟାଦି ବହୁ ଉପଦ୍ରବ କୃମିରୋଗରେ ଦେଖା ଦିଅନ୍ତି ।

(୧) ପ୍ରାତଃକାଳରେ ପ୍ରଥମରେ ଗୁଡ଼ଟିକିଏ ଖାଇ ପରେ ପୁଅଣି ବାଟିକରି ପିଇଲେ ପେଟର କୃମିସକଳ ମରିଯାନ୍ତି ।

(୨) ପାଳଧୁଆ ପତ୍ରରସ ମହୁସହ ସେବନ କଲେ କୃମି ମରିଯାନ୍ତି ।

(୩) ପଳାଶମଞ୍ଜି ତକ୍ରସହ ବାଟି ପାନ କଲେ କୃମି ବିନଷ୍ଟହୁଏ ।

(୪) ଖଜୁରିପତ୍ରର ରସ ବାଟିକରି ମଧୁସହ ପାନକଲେ କୃମି ବିନଷ୍ଟ ହୁଏ ।

(୫) କଞ୍ଚା ପାନ ବାଟି ଲେମ୍ବୁରସସହ ପାନକଲେ କୃମି ବିନଷ୍ଟ ହୁଏ ।

(୬) ଖଜୁରି ପତ୍ରରସ ଓ ଲେମ୍ବୁରସ ଏକତ୍ର ପାନ କଲେ କୃମି ବିନଷ୍ଟ ହୁଏ ।

(୭) କମଳାଗୁଣ୍ଡି ୧ ତୋଲା ଗୁଡ଼ସହ ପାନ କଲେ କୃମି ବିନଷ୍ଟ ହୁଏ ।

(୮) ପିତାଳିଭୃଙ୍ଗଙ୍କି ଦହି ସହ ବାଟି ପିଇଲେ କୃମି ବିନଷ୍ଟ ହୁଏ।

## ଶାସ୍ତ୍ରୀୟ ଔଷଧ-

କୃମିମୁଦ୍ଗର ରସ, ବିଡ଼ଙ୍ଗ ଲୌହ, କୃମିଘାତନୀ ଗୁଟିକା, ତ୍ରିଫଳାଦି ଘୃତ, ବିଡ଼ଙ୍ଗତୈଳ ।

—•(୦)•—

## ଗୁଳ୍ମ

### ଶୂଳ

ଅମ୍ଳଶୂଳ ବା ବାତାଜୀର୍ଣ୍ଣ ହେତୁ ଏହି ରୋଗ ଜାତ ହୁଏ । ସ୍ତ୍ରୀମାନଙ୍କର ରଜଃକୃଚ୍ଛ୍ର ବା ବାଧକ ହେତୁ ରକ୍ତ ଗୁଳ୍ମ ଜାତ ହୋଇଥାଏ । ଶୂଳର ଔଷଧ ସାରକ ଅନୁପାନ ସହ ବ୍ୟବହାର କଲେ ଅଧିକାଂଶ ସ୍ଥାନରେ ଗୁଳ୍ମ ଆରୋଗ୍ୟ ହୋଇଥାଏ ।

(୧) ବାତଜ ଗୁଳ୍ମରେ ହିଙ୍ଗୁହିଷ୍ଟ ହରଡ଼ାଚୂର୍ଣ୍ଣ ଓ ଏରଣ୍ଡ ତୈଳ ଏକତ୍ର ପାନ କରିବ । ଅଥବା ସାଚକ୍ଷାର ୨ ମଷା, କୁଡ଼ ୨ ମଷା, କେତକୀ କାଷ୍ଠକ୍ଷାର ୪ ମଷା, ଏସମସ୍ତ ତିଳତୈଳ ସହ ପାନ କରିବ ।

(୩) ପିତ୍ତଜ ଗୁଳ୍ମରେ – ତ୍ରିଫଳା କ୍ୱାଥସହ ଇନ୍ଦ୍ରବ ଚୂର୍ଣ୍ଣ ଅଥବା ଦ୍ରାକ୍ଷା ବା ଗୁଡ଼ସହ ହରଡ଼ାଚୂର୍ଣ୍ଣ ସେବନ କରିବ ।

(୩) କଫଜ ଗୁଳ୍ମରେ ଘିଅ ତଳା ଏରଣ୍ଡ ଝାଳ ପୋଡ଼ିଷ ବାଟି ଗୁଳ୍ମ ସ୍ଥାନରେ ଲେପିବ ଏବଂ ତାଂଉପରେ ଉଷ୍ଣ ଲୌହପାତ୍ରର ତାପ ପ୍ରଦାନ କରିବ ।

## ଶାସ୍ତ୍ରୀୟ ଔଷଧ-

ହିଙ୍ଗ୍ୱାଦି ଚୂର୍ଣ୍ଣ, ବଡ଼୍ବାଦି ଚୂର୍ଣ୍ଣ, ଗୁଲ୍ମକାଳାନଳ, ଅବସ୍ତ୍ରାଲବଣ, କାଙ୍କାୟନଗୁଡ଼ିକା, ତ୍ରୂ୍ୟଷଣାଦ୍ୟ ଘୃତ ।



# ଗ୍ରହଣୀ

ପ୍ରଥମରେ ଅତିସାର ରୋଗ ହେଲେ ତାହା ଉତ୍ତମରୂପେ ଶାନ୍ତ ନହେଉଣୁ ଯଦି ଅହାର ବିହାର ବିଷୟରେ ଅତ୍ୟାଚାର କରାଯାଏ ତେବେ ଗ୍ରହଣୀ ନାମକ ନାଡ଼ୀ ଦୂଷିତ ହୋଇ ଗ୍ରହଣୀ ରୋଗ ଜାତ ହୁଏ । କାହାର କାହାର ଉକ୍ତ କାରଣ ନଥାଇ ମଧ୍ୟ ଗ୍ରହଣୀ ରୋଗ ଜାତ ହୁଏ । ଯଦି ୧୦ । ୧୫ ଦିନ ବା ଏକ ମାସ ପର୍ଯ୍ୟନ୍ତ କୋଷ୍ଠ ବଦ୍ଧ ଥାଇ ହଠାତ୍ ୨ । ୪ ଦିନ ଅଜୀର୍ଣ୍ଣ ଝାଡ଼ା ହୁଏ ତେବେ ତାହାକୁ ସଞ୍ଚିତ ଗ୍ରହଣୀ ବା ସଂଗ୍ରହ ଗ୍ରହଣୀ କୁହାଯାଏ । ଏହି ରୋଗ ପ୍ରାୟ ଚିର ଜୀବନର ସଙ୍ଗୀ ହୋଇ ରହେ ।

(୧) ଲବଙ୍ଗ, ବେଗୁନିଆ ପତ୍ର, ଗଞ୍ଜାଇମଞ୍ଜି ବେଲପତ୍ର, ଫୁଲଖଡ଼ି ଏସମସ୍ତର ସମଭାଗ ଚୂର୍ଣ୍ଣ <କିତ୍ର ୨ ଅଣା ମାତ୍ରାରେ ଲେମ୍ବୁ ରସ ସହ ସେବନ କଲେ ଗ୍ରହଣୀ ଶାନ୍ତ ହୁଏ ।

ଶୁଣ୍ଠୀ, ଟେନିଆ, ଜିରା ମେଥୀ, ଡ଼ାଳିମ୍ବ ଚୋପା, ଶଙ୍ଖଭସ୍ମ, ବିଟଲବଣ ଧାନମହୁରି, ପ୍ରତ୍ୟେକ ୧ ଭାଗ, ହିଙ୍ଗୁ ଅର୍ଦ୍ଧ ଭାଗ, ଗଞ୍ଜାଇ ୨ ଭାଗ ଏସମସ୍ତ ଏକତ୍ର ଲେମ୍ବୁରସ ସହ ମର୍ଦ୍ଦନ କରି ୬ ରତି ପ୍ରମାଣେ ବଟିକା କରିବ । ଏଥିରୁ ଗୋଟିଏ ଲେଖେ ବଟିକା କର୍ପୂର ଜଳ ସହ ସେବନ କଲେ ଉତ୍କଟ ଅଜୀର୍ଣ୍ଣ ଗ୍ରହଣୀ, ଅମ୍ଳ ଜନିତ ଭେଦ, ଆମାତିସାର ପ୍ରଭୃତି ଶାନ୍ତ ହୁଏ ।

## ଶାସ୍ତ୍ରୀୟ ଔଷଧ-

ହିଙ୍ଗ୍ୱାଷ୍ଟକ, ହିଙ୍ଗ୍ୱାଦ୍ୟଚୂର୍ଣ୍ଣ, ପ୍ରାଣଦାଗୁଡ଼, ଶ୍ୱାଂଖାବଟୀ, ଅଗ୍ନିକୁମାର, ଗଙ୍ଗାଧର ବଟୀ, ପୀୟୂଷବଲ୍ଲୀ, ବୃହତ୍ଜୀରକାଦ ମୋଦକ, ବୃଷ୍ୟକିରିଣୀ ମେଥିମୋଦକ ।

—∘⊙∘—

## ଜ୍ୱର

ଆୟୁର୍ବେଦ ଶାସ୍ତ୍ରରେ କଥିତ ଅଛି ଜ୍ୱର କେବଳ ରୋଗମାନଙ୍କ ମଧ୍ୟରେ ରାଜା । ପ୍ରକୃତରେ ଜ୍ୱର ପରି ନାନା ଉପସର୍ଗ ସମ୍ବଳିତ କଷ୍ଟସାଧ୍ୟ ରୋଗ ଆଉ ନାହିଁ କହିଲେ ଅତ୍ୟୁକ୍ତି ହେବ ନାହିଁ । ଅତଏବ ଏହାର ପୂର୍ବରୂପ ଦେଖିବାଠାରୁ ଆରମ୍ଭ କରି ତାହାର ଚିକିତ୍ସା ବିଷୟରେ ସର୍ବଦା ସାବଧାନ ରହିବା ଏକାନ୍ତ ଆବଶ୍ୟକ । ଜ୍ୱର ହେବା ମାତ୍ରେ କିଛି ଔଷଧ ସେବନ ନ କରି ୨।୩ ଦିନ ଅପେକ୍ଷା କରିବ । କିନ୍ତୁ ସେପରି କଲେ ଯଦି ଜ୍ୱର ଭୟାନକ ହୋଇ ଉଠେ ତେବେ ଅପେକ୍ଷା ନ କରି ଶୀଘ୍ର ତାହାର ପ୍ରତିକାର କରିବ ।

ଜ୍ୱର ହେବା ପୂର୍ବରୁ ତିନଚାରି ଦିନ ଠାରୁ ଯଦି ଝାଡ଼ା ପରିଷ୍କାର ହୋଇ ନ ଥାଏ ତେବେ ଜ୍ୱରର ଦ୍ୱିତୀୟ ବା ତୃତୀୟ ଦିନ ଗୋଟିଏ ମୃଦୁବିରେଚକ ମାତ୍ରା ଦେଇ ଝାଡ଼ା ପରିଷ୍କାର କରାଇବ । ଅନ୍ୟାନ୍ୟ ମୂଳରୋଗର ଉପଦ୍ରବ ସ୍ୱରୂପ ବା ପୂର୍ବରୂପ ଯଦି ଜ୍ୱର ହୋଇଥାଏ, ତାହାହେଲେ ସେହି ପରି ଜ୍ୱରର ଚିକିତ୍ସା କରିବା ଆବଶ୍ୟକ ନାହିଁ । କିନ୍ତୁ ମୂଳରୋଗର ଉପଦ୍ରବ ଦୃଷ୍ଟିରେ ଚିକିତ୍ସା ସେଠାରେ କର୍ତ୍ତବ୍ୟ ।

ନୂତନ ଜ୍ୱରରେ ଲଂଘନ କରିବ । ସ୍ନାନ କରିବ ନାହିଁ । ଏହା ଦ୍ୱାରା ଜଠରାଗ୍ନି ଆମରସକୁ ପରିପାକ କରିବାରେ ସମର୍ଥ ହୁଏ । ଜ୍ୱର ରୋଗରେ ଆମରସର ପରିପାକ ପ୍ରତି ବିଶେଷ ଦୃଷ୍ଟି ଦେବା ବିଧି । ତାହା ପରିପାକ ନ ହେଉଥିବା ଜ୍ୱର ନିବାରକ ଔଷଧ କଦାପି ପ୍ରୟୋଗ କରିବ ନାହିଁ ।

(୧) ନେହିଁକାଲି, ତୁଳସୀ, ବେଲ ଏମାନଙ୍କ ପତ୍ର ଛେଚି ରସ ବାହାର କରି ସେ ରସ ଏକତ୍ର ୨ ଅଣା, ନବସାଦର ୧ ଅଣା, ଯବକ୍ଷାର ୧ ଅଣା, ଏସମସ୍ତ ଏକତ୍ର ସେବନ କରିବ । ଏପରି ଦିନକେ ୨।୩ ବାର ସେବନ କଲେ ଦାହ ପିପାସା ଯୁକ୍ତ ପ୍ରବଳ ଜ୍ୱର ଶାନ୍ତ ହୁଏ ।

(୨) ରସସିନ୍ଦୂର ୧ ଭାଗ, କଟୁକି ୨ ଭାଗ, ଯବକ୍ଷାର ୩ ଭାଗ, ଏସମସ୍ତ ଏକତ୍ର ଶୁକ୍ଳଅର୍କ ମୂଳ ରସରେ ବାଟି ୪ ରତି ପ୍ରମାଣେ ବଟିକା କରିବ । ଏହି ବଟିକା ଅଦା ରସ ସହ ଦିନକୁ ୩ ବାର ସେବନ କଲେ ଜ୍ୱର ଛାଡ଼ିଯାଏ ।

(୩) ସୁନାରିଅଠା, ପିପ୍ପଳୀମୂଳ, ମୁଥା କଟୁକୀ, ହରଡ଼ା ଏସମସ୍ତର କ୍ୱାଥ ପାନ କଲେ ଝାଡ଼ା ପରିଷ୍କାର ହୋଇ ଜ୍ୱର ଛାଡ଼ିଯାଏ ।

## ଶାସ୍ତ୍ରୀୟ ଔଷଧ—

ଜ୍ୱରାଙ୍କୁଶ, ଆନନ୍ଦ ଭୈରବ, ଗଦମୁରାର ଜୟାବଟି, ପଞ୍ଚାନନ ରସ, ମୃତକାଭରଣ ରସ, ମୃତ୍ୟୁଞ୍ଜୟ ରସ, ବାତବିଧ୍ୱଂସିନୀ ।

—୦○୦—

# ଜ୍ୱରାତିସାର

ଜ୍ୱରଥାଇ ଅତିସାର ହେଲେ ବା ଅତିସାର ଥାଇ ଜ୍ୱର ହେଲେ ତାହାକୁ ଜ୍ୱରାତିସାର କହନ୍ତି । ଜ୍ୱର ଥିବା ସମୟରେ ଗୁରୁପାକ ଦ୍ରବ୍ୟ ଖାଇଲେ ବା ପିତ୍ତର ଅତ୍ୟନ୍ତ ପ୍ରକୋପ ହେଲେ ଜ୍ୱରାତିସାର ଜାତ ହୁଏ ।

ଜ୍ୱରର ସମସ୍ତ ଔଷଧ ପ୍ରାୟ ବିରେଚକ ଗୁଣଯୁକ୍ତ । ଅତଏବ ଅତିସାରକୁ ଏହା ବଢ଼ାଇଦିଏ । ଅତିସାରର ସମସ୍ତ ଔଷଧ ଧାରକ । ଅତଏବ ଏହା ଜ୍ୱର ବୃଦ୍ଧି କରେ । ଏହି ଦୁଇ ପ୍ରକାର ଔଷଧ ଏକତ୍ର ମିଳାଇ ସେବନ କଲେ ସୁଦ୍ଧା କାର୍ଯ୍ୟକାରୀ ହୁଏ ନାହିଁ । ଅତଏବ ଜ୍ୱରାତିସାରର ଯେଉଁ ବିଶେଷ ଚିକିତ୍ସା ପ୍ରଣାଳୀ ଶାସ୍ତ୍ର ନିର୍ଦ୍ଦିଷ୍ଟ ହୋଇ ରହିଅଛି ତାହା କେବଳ ବ୍ୟବସ୍ଥେୟ ।

(୧) ଧନିଆ, ଇନ୍ଦ୍ରଯବ, ମୁଥା ଏସମସ୍ତ ଏକତ୍ର ବାଟି ଜଳରେ ଗୋଳ କରାଇ ଛାଣି ଦିନକେ ୨ । ୩ ବାର ପାନ କଲେ ଜ୍ୱରାତିସାର ବନ୍ଦ ହୁଏ ।

(୨) ଦୁଦୁରାମୂଳର ଛାଲି ୧ ଭାଗ, ଶୋଧିତ ହିଙ୍ଗୁଳ ୨ ଭାଗ, ଜାଙ୍ଗଣାଖଇ ୧ ଭାଗ, ଇନ୍ଦ୍ରଯବ ୧ ଭାଗ, ଶୁଣ୍ଠୀ ଅର୍ଦ୍ଧ ଭାଗ, ଏସମସ୍ତ ଏକତ୍ର ତାମ୍ବୁଳ ରସରେ ମର୍ଦ୍ଦନ କରି ଚଣାପରି ବଟିକା କରିବ । ଏହା ଧନିଆ ବତୁରା ଜଳ ଓ ମହୁ ସହ ପାନ କଲେ ଜ୍ୱରାତିସାର ବନ୍ଦ ହୁଏ ।

(୩) ଉଶୀର ବେଣା, କୁରୁବକ୍ଷି, ମୁଥା, ଧନିଆ ଶୁଣ୍ଠୀ ଲଜକୁଳିମୂଳ ଧାଇଫୁଲ, ଲୋଧ, ବେଲଶୁଣ୍ଠା ଏସମସ୍ତର କ୍ୱାଥରେ ଜ୍ୱରାତିସାର ବନ୍ଦହୁଏ ।

(୪) ଗୁଳୁଚ, ତୁଳସୀ, ଧନିଆ, ଶୁଣ୍ଠି, ବେଲଶୁଣ୍ଠା, ମୁଥା, କ୍ଷୁଦ୍ରବଣ୍ଟି, ଅକାନବିନ୍ଦ ଚିରାଇତା, କେରୁଅଁ ଖଲି, ରକ୍ତଚନ୍ଦନ, ଉଶୀର ବେଣା, ପଦ୍ମକାଠ ଏସମସ୍ତର କ୍ୱାଥ ଜ୍ୱରାତିସାର ନାଶକ ।

**ଶାସ୍ତ୍ରୀୟ ଔଷଧ**--ରାମବାଣ, ମୃତ୍ୟୁସଞ୍ଜୀବନୀ, ସର୍ବାଙ୍ଗସୁନ୍ଦର, ନାରଦୀୟ ଲକ୍ଷ୍ମୀବିଳାସ, ପୁଷ୍ପାଗୁଗ, ଶୃଙ୍ଗାରାଭ୍ର ।

—୦)୦(୦—

## ଧାତୁଦୌର୍ବଲ୍ୟ

ଅଳ୍ପ ବୟସରେ ଅସ୍ଥି ପରିପକ୍ୱ ନ ହେଉଣୁ ଅସ୍ୱାଭାବିକ ରୂପେ ଶୁକ୍ରକ୍ଷୟ କରିବା ଏବଂ ଯୌବନ ସମୟରେ ଗୃହସ୍ଥାଶ୍ରମର ନିୟମ ଅତିକ୍ରମ କରି ସର୍ବଦା ସ୍ତ୍ରୀସହ ଲିପ୍ତ ରହିବା ହେତୁ, କେହି କେହି ବା ବାରାଙ୍ଗନା ମୋହ ପାଶରେ ଆବଦ୍ଧ ହୋଇ ଅନିୟମିତ ସହବାସ କରିବା ହେତୁ ଦେହର ସାର ଶୁକ୍ରଧାତୁ ଅତିଶୟ କ୍ଷୟ ପ୍ରାପ୍ତ ହୋଇ ଦେହ ଦୁର୍ବଳ ହୋଇ ପଡ଼େ । ଅନିୟମିତ ଶୁକ୍ରକ୍ଷୟ କାରଣରୁ ସ୍ୱପ୍ନଦୋଷ ଜାତ ହୁଏ । ସ୍ୱପ୍ନରେ ଶୁକ୍ର ସ୍ଖଳିତ ହୋଇ ଦେହକୁ ଶ୍ରୀହୀନ କରିଦିଏ । ରାତ୍ରିରେ ସୁନିଦ୍ରା ହୁଏ ନାହିଁ । ଲେଶମାତ୍ର ଉତ୍ତେଜନାରେ ଶୁକ୍ର ତରଳହୋଇ ଶିଶ୍ନାଗ୍ରରେ ଉପସ୍ଥିତ ହୁଏ । ମନୁଷ୍ୟ ସ୍ତ୍ରୀ ସହବାସରେ ଅକ୍ଷମ ହୁଏ । ନାନା ଦୁଶ୍ଚିନ୍ତା, ସ୍ମୃତିହୀନତା, ଅସ୍ଥିରତା, ଇତ୍ୟାଦି ଉପଦ୍ରବ ସହିତର ହୋଇ ରହେ ।

(୧) କୋଇଲେଖା ମଞ୍ଜି, ଗୋଖରା ମଞ୍ଜି, ବାଇଡ଼ଙ୍କ ମଞ୍ଜି, ତାଳମୂଳୀ, ଶତାବରୀ, ବୁରଅଠା ଏସମସ୍ତ ସମଭାଗ ସର୍ବସମାନ ଶର୍କରା ଏକତ୍ର ଚୂର୍ଣ୍ଣ କରି ପ୍ରତ୍ୟହ ୨ ବାର ଅର୍ଦ୍ଧତୋଳା ମାତ୍ରାରେ ସେବନ କରି କଞ୍ଚା କ୍ଷୀର ପାନକଲେ ଧାତୁଦୌର୍ବଲ୍ୟ ବିଦୂରିତ ହୁଏ ।

(୨) ମଦନ ମସ୍ତକ (ଲଜ୍ଜାପୁରୁଷ) ତିନୋଟି ଗଛ ଉପାଡ଼ି ୩ ଟି କଳାମରିଚ ମିଶାଇ ପ୍ରତ୍ୟହ ପ୍ରାତଃକାଳେ ସେବନ କରି ଶୀତଳ ଜଳ ପାନ କରିବ । ଏହିପରି ୨୧ ଦିନ ଅଭ୍ୟାସ କଲେ ଧାତୁଦୌର୍ବଲ୍ୟ ଦୂରହୁଏ ।

(୩) ଅଶ୍ୱଗନ୍ଧା, ଗୋଖରୁ, ରଙ୍ଗକଇଁକନ୍ଦା, ପ୍ରତ୍ୟେକ ସମଭାଗରେ ଚୂର୍ଣ୍ଣ କରି ସର୍ବସମ ମିଶ୍ରି ମିଶାଇ ପ୍ରତ୍ୟହ ୨ ବେଳା ଅର୍ଦ୍ଧ ତୋଳା ମାତ୍ରାରେ ସେବନ କରି ଉଷ୍ଣ ଦୁଗ୍ଧ ପାନ କଲେ ୭ ଦିନ ମଧ୍ୟରେ ଧାତୁ ଦୌର୍ବଲ୍ୟ ଶାନ୍ତ ହୁଏ ।

(୪) କର୍ପୂର ଶିଳାଜତୁରେ ଘିଅକୁଆଁରି ରସ ଗୋଳାଇ ଶରାବ ସଂପୁଟରେ ପୁଟପାକ ଭସ୍ମ କରି ଏକ ଅଣା ମାତ୍ରାରେ ଛାଗଦୁଗ୍ଧ ସହ ସେବନ କଲେ ୧୦ ଦିନ ମଧ୍ୟରେ ଚମତ୍କାର ରୂପେ ଧାତୁଦୌର୍ବଲ୍ୟ ଦୂର ହୁଏ ।

## ଶାସ୍ତ୍ରୀୟ ଔଷଧ-

ବୃହଦଶ୍ୱଗନ୍ଧା ଘୃତ, ଅଶ୍ୱଗନ୍ଧାରିଷ୍ଟ, ଅମୃତପ୍ରାଶ ଘୃତ, ବୃହଚ୍ଚନ୍ଦ୍ରୋଦୟ ମକରଧ୍ୱଜ, ମଦନାନନ୍ଦ ମୋଦକ, ମନ୍ମଥାଭ୍ରରସ, ବୃହଦ୍ ବଙ୍ଗେଶ୍ୱର, ଆମଳକୀ ରସାୟନ, ଅଶ୍ୱଗନ୍ଧା ରସାୟନ, କାମିନୀ ବିଦ୍ରାବଣ, କର୍ପୂର ତିଳକ ।

—୦(୦)୦—

## ନାଡ଼ୀବ୍ରଣ

ଯେଉଁ ଅହିତାହାରବିହାରୀ ଅଜ୍ଞବ୍ୟକ୍ତି ଅପକ୍ୱ ବ୍ରଣକୁ ପକ୍ୱ ଜ୍ଞାନରେ ଶସ୍ତ୍ରପ୍ରୟୋଗ କରେ ବା ପ୍ରଚୁର ପୂଯ ଯୁକ୍ତ ଅତିପକ୍ୱ ଶୋଥକୁ ଉପେକ୍ଷା କରେ ' ତାହାର ବ୍ରଣ ଶୋଥ ଅତି ଯନ୍ତ୍ରଣାଦାୟକ ନାଡ଼ୀବ୍ରଣରେ

ପରିଣତ ହୁଏ ବା ଶୋଥସ୍ଥ ପୂୟ କ୍ରମଶଃ ତ୍ୱକ, ମାଂସ, ଶିରା, ସ୍ନାୟୁ, ସନ୍ଧି ଅସ୍ଥି, କୋଷ୍ଠ ଓ ମର୍ମସ୍ଥାନ ସକଳଙ୍କୁ ବିଦୀର୍ଣ୍ଣ କରି ଅଭ୍ୟନ୍ତରରେ ପ୍ରବେଶ କରି ନାଡ଼ୀବ୍ରଣ ଜାତ କରେ ।

**ଚିକିତ୍ସା**–ନାଡ଼ୀବ୍ରଣର ଗତି କେତେ ଦୂର ପର୍ଯ୍ୟନ୍ତ ଯାଇଅଛି ତାହା ସ୍ଥିର କରି ଶସ୍ତ୍ରଦ୍ୱାରା ସେହି ସ୍ଥାନ ପର୍ଯ୍ୟନ୍ତ ବିଦାରଣ କରିବ । ପରେ ଶୋଧନ, ରୋପଣ ପ୍ରଭୃତି ବ୍ରଣ ରୋଗ କଥିତ ଚିକିତ୍ସା କରିବ ।

(୧) ଶୁକ୍ଳ ଏରଣ୍ଡର କ୍ଷୀର ଓ କଳା ଖଇର ଏକତ୍ର ମର୍ଦ୍ଦନ କରି ପ୍ରଲେପ ଦେଲେ ନାଡ଼ୀବ୍ରଣ ବିନଷ୍ଟ ହୁଏ ।

(୨) ବଡ଼ଙ୍ଗ, ହରଡ଼ା, ବାହାଡ଼ା, ଅଁଳା, ପିପ୍ପଳୀ ଏସମସ୍ତର ଚୂର୍ଣ୍ଣ ମହୁସହ ସେବନ କଲେ ନାଡ଼ୀବ୍ରଣ ଶୁଖିଯାଏ ।

(୩) ସିଜୁକ୍ଷୀର, ଅର୍କକ୍ଷୀର, ଦାରୁହଳଦୀ ଏସମସ୍ତ ଦ୍ୱାରା ବର୍ତ୍ତି ପ୍ରସ୍ତୁତ କରି ନାଡ଼ୀବ୍ରଣରେ ପୂରାଇ ରଖିଲେ ତାହା ଶୁଖିଯାଏ ।

**ଶାସ୍ତ୍ରୀୟ ଔଷଧ**–

ସପ୍ତାଙ୍ଗଗୁଗ୍ଗୁଲ, ଭଲ୍ଲାତକାଦ୍ୟ ତୈଳ, ସୈନ୍ଧବାଦ୍ୟତୈଳ, ବୃହତ୍ ସୋମରାଜ ତୈଳ, ଭୈରବ ରସ, ଗନ୍ଧକର ସାୟନ, କୁଷ୍ଠାନ୍ତକ



## ପକ୍ଷାଘାତ

ବାତରୋଗ ରକ୍ତଦୋଷ, ଆକସ୍ମିକ ଆଘାତ, ମସ୍ତିଷ୍କ ଦୋଷ ଇତ୍ୟାଦି କାରଣରୁ ପକ୍ଷାଘାତ ଜାତ ହୁଏ । ଏହି ରୋଗରେ ମୁଖ, ହସ୍ତ, ପଦ

ବା ସର୍ବ ଶରୀର ଏକାନ୍ତ ଜଡ଼ତା ପ୍ରାପ୍ତ ହୁଏ, ଅଥବା ଶୁଷ୍କ ହୋଇଯାଏ । ଜଡ଼ଅବସ୍ଥାରେ ସ୍ନାୟୁ ଉତ୍ତେଜକ ଔଷଧ ବା ତୈଳ ଏବଂ ଶୁଷ୍କ ଅବସ୍ଥାରେ ସ୍ନିଗ୍ଧତା ସମ୍ପାଦକ ଔଷଧ ବା ତୈଳ ବ୍ୟବସ୍ଥେୟ ।

(୧) ବାଇଡ଼ଙ୍କମଞ୍ଜି ଚୂର୍ଣ୍ଣ ୧ ଅଣା, ରସୁଣ ରସ ୧ ତୋଳା, ପୁରାତନ ଘୃତ ୪ ଅଣା, ମଧୁ ୨ ଅଣା ଏସମସ୍ତ ଉତ୍ତମରୂପେ ମିଶାଇ ସେବନ କଲେ ପକ୍ଷାଘାତ ଦୂର ହୁଏ ।

(୨) ଅଶ୍ୱଗନ୍ଧା, ବାଇଡ଼ଙ୍କ ଶାଳପର୍ଣ୍ଣୀ, ଚିତ୍ରକ ବେଲମୂଳ, ଏରଣ୍ଡମୂଳ, ଶାରିବାମୂଳ, କୋଚିଲା ଏସମସ୍ତର କ୍ୱାଥ ପାନ କଲେ ପକ୍ଷାଘାତ ଦୂର ହୁଏ ।

## ଶାସ୍ତ୍ରୀୟ ଔଷଧ-

ରସରାଜ, ଛାଗଲାଦ୍ୟଘୃତ, ବାତଚିନ୍ତାମଣି, ବୃହତ୍ ବାତକୁଳାନ୍ତକ, କୁବ୍ଜପ୍ରସାରଣୀତୈଳ, ମହାମାଷତୈଳ, ମହାନାରାୟଣତୈଳ ।



# ପାଣ୍ଡୁ ରୋଗ

ନାନା ଅପଥ୍ୟର ଦ୍ୱାରା ବାତାଦ ଦୋଷତ୍ରୟ ରକ୍ତକୁ ଦୂଷିତ କରି ପାଣ୍ଡୁରୋଗ ଜାତ କରାନ୍ତି । ଏଥିରେ ଅଗ୍ନିମାନ୍ଦ୍ୟ, ମଳମୂତ୍ର, ନେତ୍ର, ପ୍ରଭୃତିର ପାଣ୍ଡୁରବର୍ଣ୍ଣ, ଅଳ୍ପ ଶୋଥ ଶରୀର ଅବସାଦ, ଅକ୍ଷିପତାରେ ଶୋଥ, ଏହି ଲକ୍ଷଣଗୁଡ଼ିକ ଦେଖାଯାଏ । ଏଥିରେ ରୋଗୀର ନେତ୍ର, ତ୍ୱକ, ନଖ, ମୁଖ ଅତ୍ୟନ୍ତ ହଳଦିଆ ବର୍ଣ୍ଣ ହୁଏ । କାମଳା ବହୁକାଳ

ଅତିକର୍ଷିତ ହୋଇ ରହିଲେ ତାହା କୁମ୍ଭକାମଳରେ ପରିଣତ ହୁଏ । ପାଣ୍ଡୁରୋଗୀର ବର୍ଣ୍ଣ ହରିତ ବା ଶ୍ୟାମ, ବଳହାନି, ମୃଦୁଜ୍ୱର, ରତିଶକ୍ତି ଲୋପ, ଦାହ ବେଦନା, ଅରୁଚି ଇତ୍ୟାଦି ଉପସ୍ଥିତ ହେଲେ ହଲୀମକ ରୋଗ ହେଲା ବୋଲି ବୁଝିବ,

(୧) ଗୁଡ଼ସହ ହରିଡ଼ା ଚୂର୍ଣ୍ଣ ପ୍ରତ୍ୟହ ସେବନ କଲେ ପାଣ୍ଡୁ ବିନଷ୍ଟ ହୁଏ ।

(୨) ଲୌହ ଭସ୍ମକୁ ଗୋମୂତ୍ରରେ ୭ ବାର ଭାବନା ଦେଇ ପ୍ରତ୍ୟହ ୨ ବେଳା ୪ ରତି ମାତ୍ରାରେ ଘୃତ ଓ ମଧୁ ସହ ସେବନ କଲେ ପାଣ୍ଡୁ କାମଳ ପ୍ରଭୃତି ବିଦୂରିତ ହୁଏ ।

(୩) ପ୍ରତ୍ୟହ ୨ ବେଳା ଘୃତମର୍ଦ୍ଦିତ ଗୁଗ୍ଗୁଳୁ ଅର୍ଦ୍ଧତୋଳା । ମାତ୍ରାରେ ସେବନ କଲେ ପାଣ୍ଡୁରୋଗ ଶାନ୍ତହୁଏ ।

(୪) ତ୍ରିଫଳା, ଗୁଳୁଚି, ବାସଙ୍ଗ, କଟୁକୀ ଚିରାଇତା, ନିମ୍ବ ଏସମସ୍ତର କ୍ୱାଥ ମଧୁସହ ପାନକଲେ ପାଣ୍ଡୁ ବିନଷ୍ଟ ହୁଏ ।

(୫) ଖଦିରକ୍ୱାଥ, ମୁଥାଚୂର୍ଣ୍ଣ, ଲୌହଭସ୍ମ ଏକତ୍ର ପାନକଲେ ପାଣ୍ଡୁକାମଳ, ହଲୀମକ ପ୍ରଭୃତି ଶାନ୍ତହୁଏ ।

## ଶାସ୍ତ୍ରୀୟ ଔଷଧ-

ନବାୟସ ଚୂର୍ଣ୍ଣ, ଧାତ୍ରୀଲୌହ, ପୁନର୍ନବାଦି ମଣ୍ଡୁର, ତ୍ରୈଲୋକ୍ୟ-ସୁନ୍ଦର ରସ, ଲୌହାଭ୍ରସିନ୍ଦୂର ।

—•(୦)•—

# ପାଳିଜ୍ୱର

(୧) ଜ୍ୱର ଆସିବା ପୂର୍ବରୁ ମଞ୍ଜୁକମଣ୍ଡିଚେଙ୍ଗ ନାକଚଣାପତ୍ର ରସ, ଓ କଳାଜୀରା ଏକତ୍ର ବାଟି ଶୁଙ୍ଘିଲେ ଜ୍ୱର ଆସେ ନାହିଁ । ଏହା ସେବନ କଲେ ମଧ୍ୟ ଜ୍ୱର ଛାଡ଼ିଯାଏ ।

(୨) ପୋକଶୁଙ୍ଘା ପତ୍ର ହାତରେ ମନ୍ଥି ତାହାର ରସ ୨ ଟୋପା ଗୁଡ଼ ଭିତରେ ରଖି ଜ୍ୱର ଆସିବା ପୂର୍ବରୁ ଖାଇ ନିରାହାର ରହିଲେ ଜ୍ୱର ଆସେ ନାହିଁ । ଏହି ରସ ଶୁଙ୍ଘିଲେ ମଧ୍ୟ ଜ୍ୱର ଆସେ ନାହିଁ ।

(୩) ଗୋଟିଏ ଓଡ଼ଶ (ଛାରପୋକ) ମାରି ଗୁଡ଼ଭିତରେ ରଖି ଗିଳିଲେ ପାଳିଜ୍ୱର ଛାଡ଼ିଯାଏ ।

(୪) ବଂଶପତ୍ରି ହରିତାଳ ୮ ରତି, ମଣଶିଳ ୪ ରତି, ଗନ୍ଧକ ୧୬ ରତି, ଏକତ୍ର ଲୌହପାତ୍ରରେ ପ୍ରଚଣ୍ଡ ଅଗ୍ନି ତାପ ଦ୍ୱାରା ଦୀର୍ଘକାଳ ପାକ କରି ଶୀତଳ ହେଲେ ଚୂର୍ଣ୍ଣ କରି ୨ ପୁଡ଼ା କରିବ । ଏଥିରୁ ଗୋଟିଏ ପୁଡ଼ା ମଧୁସହ ଲେହି ଏରେଣ୍ଡପତ୍ର ରସ ଅଧ ଛଟାଙ୍କ ପାନ କରିବ । ଏହିପରି ଦିନକେ ୨ ବାର ଜ୍ୱର ଆସିବାର ପୂର୍ବେ ଓ ପରେ ସେବନ କରି ଦୁଗ୍ଧ ପଥ୍ୟରେ ରହିଲେ ଦୁଃସାଧ୍ୟ ପାଳିଜ୍ୱର ଛାଡ଼ିଯାଏ ।

## ଶାସ୍ତ୍ରୀୟ ଔଷଧ—

ଜ୍ୱରବାରଣ ରସ, ବୃହଜ୍ଜ୍ୱରାନ୍ତକ, ବ୍ୟାଘ୍ରୀକାର, ବିଷମଜ୍ୱରାନ୍ତକ ଲୌହ, ଜୟମଙ୍ଗଳ ରସ, ପଞ୍ଚତିକ୍ତଘୃତ ।

—୦:)୦(:୦—

# ପ୍ରଦର

ଏହି ରୋଗରେ ସ୍ତ୍ରୀମାନଙ୍କର ମାସିକ ଋତୁସ୍ରାବ ଅତିରକ୍ତ ପ୍ରମାଣରେ ନିଃସୃତ ହୁଏ । ଅକାରଣ ଅବସନ୍ନତା, ଆଳସ୍ୟଭାବ, ମୃଦୁଜ୍ୱର ତଳପେଟରେ ବ୍ୟଥା ଓ ହସ୍ତପଦ ଜ୍ୱାଳା, ମୁଣ୍ଡବ୍ୟଥା, ଅମ୍ଳୋଦ୍‌ଗାର, ଯୋନିଦ୍ୱାର ଜ୍ୱାଳା, ମୂର୍ଚ୍ଛା ଏଗୁଡ଼ିକ ପ୍ରଦରରୋପସର୍ଗ । ଏହି ରୋଗ ପୁରୁଣା ହେଲେ କ୍ରମେ ଜରାୟୁ ମଧ୍ୟରେ ଘା ହୁଏ । ପୂଜ ଓ ମାଂସଧୂଆ ଜଳ ପରି ପ୍ରସ୍ରାବ ନିର୍ଗତ ହୁଏ । ଏହାକୁ ଶ୍ୱେତପ୍ରଦର କହନ୍ତି । କାହାର କାହାର ପ୍ରଦରରୁ ଶ୍ୱେତପ୍ରଦର ଜାତ ହୋଇଥାଏ । କାହାର କାହାର ଅନିୟମିତ ଭାବରେ ରକ୍ତସ୍ରାବ ହୋଇଥାଏ । କ୍ରମେ ଅତିଶୟ ଦୁର୍ବଳତା, ଅରୁଚି, ରକ୍ତହୀନତା, ଶୋଥ, ଜ୍ୱର ଓ ନାନାପ୍ରକାର ବାୟୁ-ବିକାର ଉପସ୍ଥିତ ହୁଏ ।

(୧) ଲୌହଭସ୍ମ, ଶିମୂଳମୂଳ ଚୂର୍ଣ୍ଣ, ଯାଠିମହୁ ଜୀରା ଏସମସ୍ତ ସମଭାଗରେ ଚାଉଳଧୂଆ ପାଣିସହ ପାନ କଲେ ପ୍ରଦର ଶାନ୍ତହୁଏ ।

(୨) ଜାଇପତ୍ରୀ, ଶ୍ୱେତଚନ୍ଦନ, ବଙ୍ଗ ଭସ୍ମ, ଗେରୁମାଟି ଉଶୀର-ବେଣା ଏସମସ୍ତ ବାଟି ସେବନ କଲେ ରକ୍ତସ୍ରାବ ଓ ଶ୍ୱେତପ୍ରଦର ବନ୍ଦ ହୁଏ ।

(୩) ପକା ସିନ୍ଦୁର, ମହଣ, ଅଙ୍କୁ ସୋରିଷ ଏସବୁ ବାଟି ବଟିକା କରି କଣ୍ଟାମାରିଷମୂଳ ରସ ସହ ସେବନ କଲେ ପ୍ରଦର ଶାନ୍ତ ହୁଏ ।

## ଶାସ୍ତ୍ରୀୟ ଔଷଧ—

ପ୍ରଦରାନ୍ତକ ଲୌହ, ପୁଷ୍ୟାନୁଗ ଚୂର୍ଣ୍ଣ, ପ୍ରଦରନାଶିନୀ, ମେହ-କୁଳାନ୍ତକ, କୁଟଜ ରସକ୍ରିୟା, ବସନ୍ତକୁସୁମାକର, ଅଶୋକାରିଷ୍ଟ ଅଶୋକ ଘୃତ, ଧାନ୍ୟଘୃତ ।

# ପ୍ରବାହିକା

ତେଜା ଘୋଡ଼ା ଘୋଟକା ବା ଗୁରୁପାକ ଦ୍ରବ୍ୟ ଭୋଜନ, ସର୍ବଦେ ବେଶି ଶୀତଳରେ ଶୟନ, ଅନଭ୍ୟାସେ ବା ଦୁର୍ବଳ ଶରୀରେ ଅତ୍ୟଧିକ ରୌଦ୍ର ସେବନ । ମ୍ୟାଲେରିଆ ବିଷ ଶରୀରେ ଥିବା, ବେଶିରୁକ୍ଷ ହେବା ଅଜୀର୍ଣ୍ଣ ସତ୍ତ୍ୱେ ଭୋଜନ, ଏହି ଗୁଡ଼ିକ ପ୍ରବାହିକାର କାରଣ । ବାରମ୍ବାର ଝାଡ଼ା ଯିବା, ପରିଷ୍କାର ଝାଡ଼ା ନ ହୋଇ ଅଳ୍ପ ଆମ ମିଶ୍ରିତ ଟିକିଏ ମଳ ପଡ଼ିବା, ତଳପେଟ ମୋଡ଼ି ହେବା, ସମୟେ ସମୟେ ଅଳ୍ପ ଜ୍ୱର ହେବା ଏସମସ୍ତ ପ୍ରବାହିକାର ଲକ୍ଷଣ ।

(୧) ଚୂଡ଼ାଧୂଆ ପାଣି ସହ ପୁରୁଣା ତନ୍ତୁଳ ଫୁଟେ ଓ ଚିନି କିଛି ମିଶାଇ ପାନ କଲେ ଗରମଜନିତ ପ୍ରବାହିକା ଶାନ୍ତହୁଏ ।

(୨) ଶ୍ୱେତଚୂର୍ଣ୍ଣ, କଦଳୀ କୋଳପତ୍ର, ଜୀରା, ଚିନି, ଏକତ୍ର ବାଟି ଖାଇଲେ ପ୍ରବାହିକା ଶାନ୍ତହୁଏ ।

(୩) ପସାରୁଣୀ, ମଣ୍ଡୁକପର୍ଣ୍ଣୀ, ଡ଼ାଳିମ୍ବପତ୍ର, ମୁଥା ଏସମସ୍ତର ରସପାନ କଲେ ପ୍ରବାହିକା ଶାନ୍ତହୁଏ ।

(୪) କେରୁଆଁ ଗଛର ରସ ପୋଷେଲେଖେ ଦିନକେ ୨।୩ ବାର ପାନ କଲେ ପ୍ରବାହିକା ଶାନ୍ତହୁଏ ।

(୫) କଞ୍ଚାବେଲ ନିଆଁରେ ପୋଡ଼ି ତାହାର ରସ ଶ୍ୱେତଚନ୍ଦନ, କର୍ପୂର, ଚିନି ଏସମସ୍ତ ଚାଉଳଧୁଆ ପାଣିସହ ପାନକଲେ ସମସ୍ତ ଉପଦ୍ରବ ଯୁକ୍ତ ପ୍ରବାହିକା ବନ୍ଦହୁଏ ।

(୬) ଡ଼ାଳିମଚୋପା, ଧନିଆ, ଗଞ୍ଜେଇ, ହଳଦୀ, ଟାଙ୍ଗଣାଖଇ, ଝାଉଁଫଳ ଏକତ୍ର ବାଟି ୪।୫ ରତି ପ୍ରମାଣ ବଟିକା କରିବ ଏହି ବଟିକା ପେଟ ଗରମ ଥିଲେ ମୁଥାରସ ସହ ଓ ଶୀତଳ ଥିଲେ ଚାଉଳଧୁଆ ପାଣିସହ ସେବନ କଲେ ପ୍ରବାହିକା ଶାନ୍ତହୁଏ ।

## ଶାସ୍ତ୍ରୀୟ ଔଷଧ

ଆନନ୍ଦଭୈରବ, ନୃପବଲ୍ଲଭ, ସର୍ବାଙ୍ଗସୁନ୍ଦର, ପ୍ରବାଳକବାତ, ବୃଷ୍ୟକର୍ପଟୀ ।

### ପ୍ରମେହ--ଧାତୁଦୌର୍ବଲ୍ୟ ଦେଖ



## ପ୍ଲୀହା

କମ୍ପଜ୍ୱର କେତୁ ଦିନ ସ୍ଥାୟୀ ହେଲେ ଜ୍ୱର ଅବସ୍ଥାରେ କଫଜନକ ପଦାର୍ଥ ଭୋଜନ କଲେ ଅଥବା ଦେହରେ ସର୍ବଦା ମନ୍ଦଜ୍ୱର ରହିଲେ କଫ ପିତ୍ତ ଦୂଷିତ ହୋଇ ପ୍ଲୀହା ଜାତ ହୁଏ । ଏହି ରୋଗରେ କଫ ପିତ୍ତ ନାଶକ ଓ ରେଚକ ଗୁଣଯୁକ୍ତ ଔଷଧ ବ୍ୟବହାର କରିବ । ପ୍ଲୀହା ଜାତ ହେଲେ ରକ୍ତ ଖରାପ ହୋଇଯାଏ ଅତଏବ ଏଥିରେ ଲୌହଭସ୍ମ ଅତୀବ ଉପକାରୀ ।

(୧) ମୁସମ୍ବର ୧ ଭାଗ ହିଙ୍ଗୁ ୨ ଭାଗ, ଯବକ୍ଷାର ୩ ଭାଗ, ହରଡ଼ା ୪ ଭାଗ ଏସମସ୍ତ ଏକତ୍ର ଚୂର୍ଣ୍ଣ କରି ଅର୍ଦ୍ଧ ତୋଲା ମାତ୍ରାରେ ସେବନ କଲେ ପ୍ଲୀହା ଶାନ୍ତ ହୁଏ ।

(୨) ସୈନ୍ଧବ ଲବଣ, ବିଟଲୁଣ, ଅର୍ଣ୍ଣିଦେଧା, ଏହି ତିନି ପଦାର୍ଥକୁ ସମଭାଗରେ ଗୋମୂତ୍ର ସହ ବାଟି ଅର୍ଦ୍ଧ ପତ୍ର ଗୁଡ଼ାଇ ହାଣ୍ଡି ମଧ୍ୟରେ ରଖି ଅନ୍ତର୍ଧୂମ ଭସ୍ମ କରିବ । ଏହି ଭସ୍ମ ୩ । ୪ ରତି ମାତ୍ରାରେ ପୁରୁଣା ଗୁଡ଼ ଓ ପିପ୍ପଳୀ ଚୂର୍ଣ୍ଣ ସହ ସେବନ କଲେ ପ୍ଲୀହା ଶାନ୍ତ ହୁଏ ।

(୩) ପିପ୍ପଳୀମୂଳ, ଚବ୍ୟଇତା, ସଜନାଛାଲ, ଚିତାମୂଳ, କୋଳଥିଅମୂଳ, ରକ୍ତଚନ୍ଦନ, ଦବରଡ଼ା ଏସମସ୍ତର କ୍ୱାଥରେ ଅମୃତଭଣ୍ଡା କ୍ଷୀର ୨୦ । ୩୦ ଟୋପା ମିଶାଇ ପାନ କଲେ ପ୍ଲୀହା ଶାନ୍ତ ହୁଏ ।

## ଶାସ୍ତ୍ରୀୟ ଔଷଧ-

ଗୁଡ଼ପିପ୍ପଳୀ ହିଙ୍ଗ୍ୱାଦିଚୂର୍ଣ୍ଣ, ଜ୍ୱରଘ୍ନଶକ, ଲୋକନାଥ ରସ ମୃତ୍ୟୁଞ୍ଜୟ ଲୌହ, ପ୍ଲୀହାନ୍ତକ ରସ, ପ୍ଲୀହାକୁଠାର ।



## ବହୁମୂତ୍ର

ଅତିରକ୍ତ ଦିବାନିଦ୍ରା, ଅତିରିକ୍ତ ମାନସିକ ପରିଶ୍ରମ, ବ୍ୟାୟାମ ରାହିତ୍ୟ, ଅତିଶୟ ବିଳାସିତା, ଦଧି ମିଷ୍ଟାନ୍ନ, ପ୍ରଭୃତି କଫଜନକ ପଦାର୍ଥ ଅଧିକ ପରିମାଣରେ ଖାଇବା, ଅନିୟମିତ ଶୁକ୍ର କ୍ଷୟ ଇତ୍ୟାଦି କାରଣରୁ ବହୁମୂତ୍ର ଜାତ ହୁଏ ।

ମୁଖ ଶୁଷ୍କ, ପିପାସା, କୋଷ୍ଠବଦ୍ଧ, ଶୁକ୍ରତାରଲ୍ୟ, ମୂତ୍ରବ୍ୟଥା, ମୂତ୍ରବୃଦ୍ଧି, ଦୃଷ୍ଟିହୀନ, ଦୁର୍ବଳତା, ହସ୍ତପଦ ଜ୍ୱାଳା, ବ୍ରଣ ବାହାରିବା ଶରୀରର କୌଣସି କୌଣସି ସ୍ଥାନରେ ବେଦନା ଇତ୍ୟାଦି ବହୁମୂତ୍ରର ଉପସର୍ଗ । ଏହି ରୋଗରେ କାହାର କାହାର ରାକ୍ଷସପରି କ୍ଷୁଧା ହୁଏ । ପୀଡ଼ା ପୁରୁଣା ହେଲେ ଉରଃକ୍ଷୟ ଶୋଥ ଓ ଶରୀରର ସ୍ଥାନେ ସ୍ଥାନେ ଘା' ହୁଏ ।

(୧) ଜାମୁମଞ୍ଜି, ଡିମ୍ବିରି, ଅଳା, ଏସମସ୍ତର ଚୂର୍ଣ୍ଣ ଘୃତ, ମହୁ ସହ ଲେହିଲେ ବହୁମୂତ୍ର ଶାନ୍ତ ହୁଏ ।

(୨) ଲୌହବସ୍ତୁ, ସାଲମ ମିଶ୍ରି, ଜାଲପର୍ଣ୍ଣୀ, ଶିଳାଜତୁ, ନାଗେ-ଶର, ବଂଶ ଓଲ ଏସମସ୍ତର ଚୂର୍ଣ୍ଣ ଗୁଆଳନ୍ଦୁଣୀ ସହ ଖାଇଲେ ବହୁମୂତ୍ର ନିବାରଣ ହୁଏ ।

(୩) ଆପୁ ସେବନ କଲେ ଉପକାର ହୁଏ ।

(୪) ଧନିଆ, ଅଁଳା, କହ୍ଲାର ଜାମମଞ୍ଜି ଏସମସ୍ତ ସିଦ୍ଧ କରି ତାହାର କ୍ୱାଥ ଶୀତଳ ଅବସ୍ଥାରେ ପାନ କଲେ ବହୁମୂତ୍ରଜାତ ପିପାସା ଦୂର ହୁଏ ।

## ଶାସ୍ତ୍ରୀୟ ଔଷଧ-

ତାରକେଶ୍ୱର, ସୋମନାଥ ରସ, ହେମନାଥ ରସ, ପୂର୍ଣ୍ଣଚନ୍ଦ୍ର ରସ, ମହାଯୋଗେଶ୍ୱର, ଆମଲକୀ ରସାୟନ ।

—୦(୦)୦—

# ବାତରୋଗ

ବାତରୋଗ ନାନା ପ୍ରକାର, ସନ୍ଧିସ୍ଥଳମାନଙ୍କରେ ପୀଡ଼ା ହେବା, ହସ୍ତପଦ ନ ଚଳିବା, ମୁଖ ବଙ୍କା ହେବା, ଦେହର ସ୍ଥାନ ବିଶେଷ ଜଡ଼ହୋଇ ରହିବା, ଇତ୍ୟାଦି ନାନାରୂପରେ ବାତରୋଗ ଦେଖାଯାଇଥାଏ । ଅପତାନକ, ଧନୁଷ୍ଟଙ୍କାର, ମନ୍ୟାସ୍ତମ୍ଭ, ଇତ୍ୟାଦି ଅତି ଦୁଃସାଧ୍ୟ କଷ୍ଟଦାୟକ ରୋଗମଧ୍ୟ ଜାତ ହୁଏ । ଏହାର ଚିକିତ୍ସା ଏହି କ୍ଷୁଦ୍ର ପୁସ୍ତକରେ ପାଇବା ଅସମ୍ଭବ ।

(୧) ବେଗୁନିଆ, ବେଲ, ପ୍ରସାରୁଣୀ ଏମାନଙ୍କର ପତ୍ର ଛେଚି ଏକ ଛଟାଙ୍କ ରସ ବାହାର କରି ଅଳ୍ପ ଗରମ କରି ତାହା ୬ ରତି ସୈନ୍ଧବ ଲବଣସହ ପାନ କଲେ ବାତପୀଡ଼ା ଶାନ୍ତହୁଏ ।

(୨) ରସୁଣ, ସଜନା ଛାଲି, ବେଗୁନିଆ ଛାଲି, ଶୁଣ୍ଠୀ, ପାନମହୁରି ଏସମସ୍ତର କ୍ୱାଥ ପାନକଲେ ବାତରୋଗ ଶାନ୍ତହୁଏ ।

(୩) କଞ୍ଚା ଲଙ୍କାମରିଚ, ସଜନା ଛାଲି, ଦୁଦୁରା ପତ୍ର, ଅରଖ ପତ୍ର, ସୈନ୍ଧବ ଲବଣ ଏସମସ୍ତ ବାଟି ଲେପିଲେ ବାତ ପୀଡ଼ା ଶାନ୍ତହୁଏ ।

(୪) ଶୁକ୍ଳ ଯୋରଷ, ମୁସମ୍ବର, ସଜନାଛାଲି, ଗୋଲ ମରିଚ, ହିଙ୍ଗୁ, ଅଦା, ବିଟଲୁଣ, ଦୁଦୁରାଅଗି ଏସମସ୍ତ ବାଟି ଗରମ କରି ଲେପିଲେ ନିଶ୍ଚୟ ବ୍ୟଥା ଶାନ୍ତହୁଏ ।

## ଶାସ୍ତ୍ରୀୟ ଔଷଧ-

ବୈଶ୍ୱାନର ଚୂର୍ଣ୍ଣ, ରସୋନାବଲେହ, ମହା ରସୋନପିଣ୍ଡ, ବାତ ଗଜାଙ୍କୁଶ ବାତ ଗଜେନ୍ଦ୍ର ସିଂହ, ଯୋଗରାଜ ଗୁଗ୍ଗୁଳୁ ମହାମାଷତୈଳ ବୃହତ୍ ସୈନ୍ଧବାଦ୍ୟ ତୈଳ, ରସୋନାଦ୍ୟ ତୈଳ, କୁବ୍ଜପ୍ରସାରଣୀ ତୈଳ, ବାତରାଜ ତୈଳ, ନାରାୟଣ ତୈଳ ।

---

## ବାଧକ ବା ରଜଃକୃଚ୍ଛ୍ର

ଯେଉଁ ସ୍ତ୍ରୀମାନଙ୍କର ମାସିକ ଋତୁସ୍ରାବ ସମୟରେ ପରିଷ୍କାର ରୂପେ ଋତୁ ରକ୍ତସ୍ରାବ ହୁଏନାହିଁ ସେମାନଙ୍କର ତଳ ପେଟରେ ବ୍ୟଥାଜାତ ହୁଏ । ଶୂଳ,ଅଗ୍ନି ମାନ୍ଦ୍ୟ, ଗୁଳ୍ମ, ଶୋଥ, ବସ୍ତିରେ ଅତିଶୟ ଯନ୍ତ୍ରଣାଦାୟକ ପୀଡ଼ା, ମୂତ୍ରଭାର, ସମୟେ ୨ ମୂର୍ଚ୍ଛା ଉପସ୍ଥିତ ହୁଏ । ଏହିପରି ରୋଗକୁ ବାଧକ ବା ରଜଃକୃଚ୍ଛ୍ର କହନ୍ତି । କୌଣସି ୨ ସ୍ତ୍ରୀର ଋତୁକାଳେ ଅତିରକ୍ତ ରକ୍ତ ସ୍ରାବ ହୋଇ ଅତ୍ୟନ୍ତ ବ୍ୟଥା ହୁଏ । ଯୋନିରେ ଜ୍ୱାଳା ଘାଲଯୁକ୍ତ ବା କ୍ଲେଦଯୁକ୍ତ ରକ୍ତସ୍ରାବ ହୁଏ । ଅଥବା ମାଂସଧୁଆ ଜଳପରି ସ୍ରାବ ହୋଇଥାଏ ।ମାସରେ ଥରେ କେବେ ୨ ମାସରେ ଥରେ ଋତୁ ଦେଖାଦିଏ ;

(୧) କଞ୍ଚା ଚିତାମୂଳ ଅର୍ଦ୍ଧତୋଳା ମୁସମ୍ବର ଅର୍ଦ୍ଧତୋଳା ଶୋଧିତ ହିଙ୍ଗୁ ଅର୍ଦ୍ଧତୋଳା ଏସମସ୍ତ ଏକତ୍ର ଜଳରେ ମର୍ଦ୍ଦନକରି ୪ରତି ପ୍ରମାଣେ ବଟିକା କରିବ । ପୁରାତନ ଗୁଡ଼ସହ ଏଥିରୁ ଗୋଟିଏ ଲେଖେ ବଟିକା ପ୍ରତ୍ୟେକ ୩ ଘଣ୍ଟା ଅନ୍ତରେ ଦିନକେ ୪ ଥର ସେବନ କରିବ ! ଋତୁ-କାଳରେ ଏପରି ୩ ଦିନ ସେବନ କଲେ ସକଳ ପ୍ରକାର ବାଧକ ଓ ରଜଃକୃଚ୍ଛ୍ର ଦୋଷ ଦୂର ହୁଏ । ଏହା ବହୁବାର ପରୀକ୍ଷିତ ।

(୨) ଧାନୁଆମରିଚ ୪ ଅଣା ଓଜନ କଲ ବାଟି ପାଚିଲା କଦଳୀ ମଧ୍ୟରେ ଦେଇ ଋତୁସ୍ନାନ ପରେ ସ୍ତ୍ରୀ ଗିଳିଦେଲେ ବାଧକ ବନ୍ଦ-ହୋଇ ସୁସନ୍ତାନ ଲାଭ ହୁଏ ।

(୩) ପୁରୁଣା ଗଙ୍ଗାରି, ବନଅଦା, କାଲର କନ୍ଦିଲ ପତ୍ର ଏ ସମସ୍ତ ବାଟି ୨ ଅଣା ମାତ୍ରାରେ ସେବନ କଲେ ବେଦନା ଶାନ୍ତହୁଏ ।

(୪) ଗୁଡ଼ତ୍ୱକ, ଅଳା, ମୁସମ୍ବର, ଟାଙ୍ଗଣାଖଇ, ହିଙ୍ଗୁ, ଲୌହଭସ୍ମ, ତନ୍ତୁଡ଼ି ଏସମସ୍ତର ସମଭାଗ ଚୂର୍ଣ୍ଣ ଏକତ୍ର ଗରମଜଳ ସହ ସେବନ କଲେ ବାଧକ ବେଦନା ଶାନ୍ତହୁଏ ।

## ଶାସ୍ତ୍ରୀୟ ଔଷଧ-

କାଙ୍କାୟନ ଗୁଡ଼ିକା, ଚନ୍ଦ୍ରପ୍ରଭା ଗୁଡ଼ିକା, ଫଳକଲ୍ୟାଣ ଘୃତ ଧାତ୍ରୀ ଘୃତ, ବାଧକାରି ବଟୀ



## ମୂତ୍ରକୃଚ୍ଛ୍ର

ବ୍ୟାୟାମ ତୀକ୍ଷ୍ଣଵୀର୍ଯ୍ୟ ଓ ରୁକ୍ଷଦ୍ରବ୍ୟ ସେବନ ଦ୍ରୁତପୃଷ୍ଠ ଯାନ ଗମନ, ଅଧ୍ୟଶନ ଇତ୍ୟାଦି କାରଣରୁ ମୂତ୍ରକୃଚ୍ଛ୍ର ଜନ୍ମେ । ଏଥିରେ ମୂତ୍ର କଷ୍ଟ କଷ୍ଟରେ ନିର୍ଗତ ହୁଏ ଏବଂ ମୂତ୍ର ସ୍ରାବକାଳେ ବ୍ୟଥା ହୁଏ ।

(୧) ସ୍ଥୂଳ ପଦ୍ମପତ୍ର ଓ କ୍ଷୀରସାଗର ମଞ୍ଜି ଛେଚି ସେହି ରସ ୧୦।୧୨ ତୋଳା ଯବକ୍ଷାର ସହ ପାନ କଲେ ମୂତ୍ରକୃଚ୍ଛ୍ର ନିବାରିତ ହୁଏ ।

(୨) ଗୋଖରା, କବାବ ଚିନି, ଉଶୀରବେଣା, ପାଠିମଞ୍ଜି, ହରଡ଼ା, ଦୁରାଲଭା, କୁଶମୂଳ, କାକୁଡ଼ି ମଞ୍ଜି ଏସମସ୍ତର କ୍ୱାଥ ପାନକଲେ ମୂତ୍ରକୃଚ୍ଛ୍ର ବ୍ୟଥା ଦୂରହୁଏ ।

(୩) କୋଳଥ, ବରୁଣ ଛାଲି, ଗୋଖରା, ଶ୍ୱେତପୁରୁଣୀ ଏ ଏସମସ୍ତର କ୍ୱାଥ ଯବକ୍ଷାର ସହ ପାନ କଲେ ମୂତ୍ରକୃଚ୍ଛ୍ର ଶାନ୍ତ ହୁଏ ।

## ଶାସ୍ତ୍ରୀୟ ଔଷଧ-

ଅଶ୍ମରୀ ରୋଗେ ଦ୍ରଷ୍ଟବ୍ୟ ।

---

# ରକ୍ତପିତ୍ତ

ଏହି ରୋଗରେ ମୁଖ, ନାକ, ଲିଙ୍ଗ, ଗୁହ୍ୟ ଯୋନି, ଲୋମମୂଳ ଇତ୍ୟାଦି ଯେ କୌଣସି ଗୋଟିଏ ବା ସମସ୍ତ ମାର୍ଗରେ ରକ୍ତ ବହିର୍ଗତ ହୁଏ । ପ୍ରଚଣ୍ଡ ସୂର୍ଯ୍ୟତାପ, ଅତ୍ୟନ୍ତ କାୟିକ ପରିଶ୍ରମ, ଶୋକ, ଦୁଶ୍ଚିନ୍ତା, ଉପବାସ ରାତ୍ରି ଜାଗରଣ, ଅତ୍ୟନ୍ତ ରୁକ୍ଷ ସେବା, ଉତ୍କଟ କଟୁ ଦ୍ରବ୍ୟ ଓ ଉଷ୍ଣ ପଦାର୍ଥ ସର୍ବଦା ଭକ୍ଷଣ, ଯକୃଦ୍‌ଦୋଷ ଅର୍ଶୋରକ୍ତ ଓ ସ୍ତ୍ରୀମାନଙ୍କର ଋତୁସ୍ରାବ ହଠାତ୍ ବନ୍ଦ କରିବା ଇତ୍ୟାଦି କାରଣରୁ ରକ୍ତପିତ୍ତର ଜନ୍ମ ।

(୧) କଦଳୀ ଜାମ ପତ୍ର, ପକ୍ୱ ଡ଼ିମିରି, ବାସଙ୍ଗ ପତ୍ର ଏସମସ୍ତ ଛେଚି ରସ ବାହାର କରି ସେହି ରସ ଚିନିସହ ପାନକଲେ ରକ୍ତପିତ୍ତ ଶାନ୍ତ ହୁଏ ।

(୨) ବାସଙ୍ଗପତ୍ରରସ ପୁଟ ପାକ କରି ତାହାର ରସ ମଧୁ ନେଇ ସହ ପାନକଲେ ରକ୍ତପିତ୍ତ ଶାନ୍ତହୁଏ ।

(୩) ମୃଷ୍ଟ ଚୂର୍ଣ୍ଣୀକୃତ ଜିରା ୨ ରତି ମାତ୍ରାରେ, ମଧୁ ଓ ଘୃତ ସହ ଲେହିଲେ ରକ୍ତପିତ୍ତ ଶାନ୍ତହୁଏ ।

(୪) ଧନିଆ, ଅଁଳା, ବାସଙ୍ଗପତ୍ର, ଦ୍ରାକ୍ଷା, ପାପଡ଼ା ଏସମସ୍ତର ଶୀତ କଷାୟ ପାନକଲେ ରକ୍ତପିତ୍ତ ଶାନ୍ତହୁଏ ।

## ଶାସ୍ତ୍ରୀୟ ଔଷଧ-

ଏଲାଦି ଗୁଡ଼ିକା, ଖଣ୍ଡକୁଷ୍ମାଣ୍ଡାବଲେହ, ବାସା କୁଷ୍ମାଣ୍ଡ ଖଣ୍ଡ, ଚନ୍ଦ୍ରଶର୍କର ଲୌହ, ଦୁର୍ବାଦ୍ୟ ଘୃତ, ଖଣ୍ଡକାଦ୍ୟ ଲୌହ ।



## ରାଜଯକ୍ଷ୍ମା-କ୍ଷୟକାଶ

ନାକ ମୁଖ ବାଟେ ଧୂଳି ଫୁସ୍ ଫୁସ୍ ମଧ୍ୟକୁ ଯିବା, ଅତ୍ୟନ୍ତ ଜୋରରେ କାଶିବା ଦ୍ୱାରା ବୁକୁରେ ଆଘାତ ଲାଗିବା, ଉପସ୍ଥିତ ଛୁଙ୍କିଲ ବେଗଧାରଣ, ଅତିରିକ୍ତ ମଦ୍ୟପାନ, ଅନିୟମିତ ଶୁକ୍ରକ୍ଷୟ, ଅତ୍ୟଧିକ ଦୈହିକ ବା ମାନସିକ ପରିଶ୍ରମ, ଅତିଶୟ ଶୋକ, ଦୁଶ୍ଚିନ୍ତା, ବଳକ୍ଷୟ, ଆହାର ବିହାର ବିଷୟରେ ଗୁରୁତର ଅନିୟମ ଇତ୍ୟାଦି କାରଣରୁ ଏହି ରୋଗର ଜନ୍ମ । ଏହାଦ୍ୱାରା ଫୁସ୍ ଫୁସ୍‌ରେ ଘା' ହୋଇ କ୍ରମେ କ୍ରମେ ପାଚି କଫ ସହି ଏହାର ପୂଯ ରକ୍ତ ମୁଖବାଟେ ନିର୍ଗତ ହୁଏ ।

ସ୍କନ୍ଧ ଓ ପାର୍ଶ୍ୱରେ ବେଦନା, ହସ୍ତପଦ ଜ୍ୱାଳା, ରାତ୍ର କାଳେ ସ୍ୱେଦସ୍ରାବ, ଆପାଦମସ୍ତକବ୍ୟାପୀ ସର୍ବଧାତୁଗତ ଜ୍ୱର, ଏହିଗୁଡ଼ିକ

ରାଜଯକ୍ଷ୍ମାର କଠ୍ୟସ୍ଥାୟୀ ଲକ୍ଷଣ । ରୋଗର ପୂର୍ଣ୍ଣାବସ୍ଥାରେ କାସ, ଜ୍ୱର ରକ୍ତପିତ୍ତ, ଏମାନେ ସ୍ୱ ସ୍ୱ ଉପସର୍ଗ ସହ ବିଦ୍ୟମାନ ଥାନ୍ତି ।

ପ୍ରସ୍ରାବ ସହ ଶୁକ୍ରକ୍ଷୟ ଓ ଉଦରାମୟ ଏହିରୋଗର ଭୟାନକ କୁଲକ୍ଷଣ । ଏହି ଭୟଙ୍କର ମହାରୋଗରେ ରସ ରକ୍ତ ମାଂସ ପ୍ରଭୃତି ସପ୍ତଧାତୁ କ୍ରମଶଃ କ୍ଷୟ ପ୍ରାପ୍ତ ହୁଏ । କ୍ଷୀଣଧାତୁର ପୂରଣ ଓ ଦେହର ବଳ ରକ୍ଷା କେବଳ ଏହି ରୋଗ ଚିକିତ୍ସାର ପ୍ରଧାନ ମୂଳସୂତ୍ର ।

(୧) ବିଶଲ୍ୟକରଣୀ ପତ୍ର, ପଣ୍ଟୁଡ଼ିମିର, ଭେଳା, ବାସଙ୍ଗପତ୍ର ଏସମସ୍ତ ଏକତ୍ର ଛେଚି କଦଳୀ ପତ୍ର ଗୁଡ଼ାଇ ମାଟି ଲେପି ପୋଡ଼ିବ । ପରେ ଔଷଧ ବାହାର କରି ଚିପୁଡ଼ି ରସ ବାହାର କରିବ । ଏହି ରସ ପ୍ରତ୍ୟହ ପ୍ରାତଃକାଳେ ଓ ସନ୍ଧ୍ୟାରେ ୪ ରତି, ବଂଶଲୋଚନା ଚୂର୍ଣ୍ଣ ଓ ମଧୁସହ ପାନ କଲେ କ୍ଷୟକାସ ଶାନ୍ତହୁଏ ।

(୨) ବାସଙ୍ଗ ଛାଲ, ଯଷ୍ଟିମଧୁ, ରକ୍ତଚନ୍ଦନ, ଜଉ, ଦ୍ରାକ୍ଷା, ଲୋଧ, ଭେଳା, ଅର୍ଜୁନଛାଲି ଏସମସ୍ତର କ୍ୱାଥ ସହ ସହସ୍ରପୁଟିତ ଅଭ୍ରଭସ୍ମ ୨ ରତି ମାତ୍ରାରେ ସେବନ କରିବା ଅଭ୍ୟାସ କଲେ କେତେଦିନ ପରେ କ୍ଷୟ କାସ ଶାନ୍ତହୁଏ ।

(୩) ବାହାଡ଼ା, ଗୁଳୁଚୀସାର, ଯଷ୍ଟିମଧୁ, ବଂଶଲୋଚନା, ପ୍ରବାଳ ଭସ୍ମ, ପିପ୍ପଳୀ ଏସମସ୍ତ ସମଭାଗ ଚୂର୍ଣ୍ଣ ମଧୁ ସହ ସେବନ କଲେ ରାଜଯକ୍ଷ୍ମା ଦୂରୀଭୂତ ହୁଏ ।

(୪) ରସସିନ୍ଦୂର, ଗେରୁମାଟି, ଗନ୍ଧକ, ଭୃଙ୍ଗପତ୍ର ଶାରବା-ମୂଳ, ନାଗେଶ୍ୱର, ମୁଥା, ବାସଙ୍ଗଛାଲ ପିପ୍ପଳୀ, ବଂଶଲୋଚନା, ବିଡ଼ଙ୍ଗ, ଦ୍ରାକ୍ଷା, ମିଶ୍ରି, ମହଣଖଜୁରୀ ଏସମସ୍ତ ଘୃତ ଓ ମଧୁ ସହ ମର୍ଦ୍ଦନ କରି ୪ ଅଣା ମାତ୍ରାରେ ଉଷ୍ଣ ଦୁଗ୍ଧ ସହ ପାନ କଲେ ଯକ୍ଷ୍ମା ଉପଶମହୁଏ, ଓ ବଳବୃଦ୍ଧିହୁଏ ।

## ଶାସ୍ତ୍ରୀୟ ଔଷଧ-

ବାସବାଲେହ, ବାସାକୁଷ୍ମାଣ୍ଡ ଖଣ୍ଡ, ଏଲାଦିଗୁଡ଼ିକା, ରତ୍ନଗର୍ଭ ରସ, ସାର୍ବଭୌମ, ଖଣ୍ଡକାଦ୍ୟଲୌହ, ସର୍ବାଙ୍ଗ ସୁନ୍ଦର, ବୃହତ୍ ଶୃଙ୍ଗାରାଭ୍ର, ବସନ୍ତତିଲକ, ବସନ୍ତକୁସୁମାକର, ବୃହଚ୍ଚନ୍ଦ୍ରୋଦୟମକରଧ୍ୱଜ, ଚ୍ୟବନପ୍ରାଶ, ଅମୃତପ୍ରାଶ ଘୃତ, ଅଗସ୍ତ୍ୟହରୀତକୀ, ଖଣ୍ଡକାଦ୍ୟଲୌହ, ଖଣ୍ଡକୁଷ୍ମାଣ୍ଡାବଲେହ ।

—୦(୦)୦—

## ଶିଶୁରୋଗ

ମାତାର ଦୂଷିତ ସ୍ତନ୍ୟ ଦୁଗ୍ଧ ପାନ କରିବା ଦ୍ୱାରା, ଅତିଶୟ ବୃଷ୍ଟି, ପ୍ରଚଣ୍ଡସୂର୍ଯ୍ୟ ତାପ, ଅତିଶୀତ ଇତ୍ୟାଦି କାରଣରୁ ମଧ୍ୟ ଶିଶୁରୋଗ ଜାତହୁଏ । ସ୍ତନ୍ୟପାୟୀ ଶିଶୁ ସକାଶେ ଜନନୀ ନିଜର ରୋଗ ହେବାପରି ବୋଧକରି ସମସ୍ତ ପଥ୍ୟ ପାଳନ କରିବ । ଅତି ମୃଦୁବୀର୍ଯ୍ୟ ଔଷଧ ଶିଶୁ-ମାନଙ୍କ ସକାଶେ ଆବଶ୍ୟକ । ଉତ୍କଟତିକ୍ତ, କଟୁ, ଅମ୍ଳ, ବା ଲବଣ ରସଯୁକ୍ତ ତୀକ୍ଷ୍ଣ ଔଷଧ କଦାପି ବ୍ୟବସ୍ଥେୟ ନୁହେଁ । ପ୍ରୌଢ଼ ବୟସ୍କପକ୍ଷରେ ଯେଉଁ ଔଷଧର ବ୍ୟବସ୍ଥାଅଛି ତାହା ବିବେଚନା ପୂର୍ବକ ଅତିଅଳ୍ପ ମାତ୍ରାରେ ଶିଶୁପକ୍ଷରେ ଉପକାରୀ ହୁଏ ।

କେବଳ ଶିଶୁସକାଶେ ଶାସ୍ତ୍ରରେ ମଧ୍ୟ କେତେକ ଔଷଧ ନିର୍ଦ୍ଦିଷ୍ଟ ଅଛି ।

## ଶାସ୍ତ୍ରୀୟ ଔଷଧ-

ଶିଶୁ ଚତୁର୍ଭଦ୍ରିକା, ମହାଗନ୍ଧକ, ବାଲକରସ, ପ୍ରାଣବଲ୍ଲଭ, ଯମାନୀପଞ୍ଚକ, ଲବଙ୍ଗଚତୁଃସମ, ଶିଶୁକସ୍ତୂରୀ ମାତ୍ରା, ବାଲାନନ୍ଦ ବଟୀ ବସନ୍ତ ଭୂପର ବଟୀ ।

# ଶୂଳ

ଯେଉଁ କାରଣମାନଙ୍କରୁ ଅମ୍ଳପିତ୍ତର ଜନ୍ମ ସେହି ସମୁଦାୟ କାରଣରୁ ଶୂଳ ଯାତହୁଏ । କାହାର କାହାର ଅମ୍ଳପିତ୍ତ ରୋଗର ପରିଣାମରେ ଶୂଳହୁଏ । କିମ୍ବା କୌଣସି ପ୍ରକାର ବାୟୁ କୁପିତ ହୋଇ ଶୂଳ ଉତ୍ପାଦନ କରେ । ସମସ୍ତ ପ୍ରକାର ଶୂଳରେ ବାୟୁ କେବଳ ଅଧିନାୟକ ବୋଲି ଜାଣିବ ।

(୧) ଶୁଣ୍ଠୀ, ହିଙ୍ଗୁ, ଜାଇଫଳ, ଯବକ୍ଷାର, ଶଙ୍ଖଭସ୍ମ, ଗନ୍ଧକ ଶୋଧିତ କୋଚିଲା ଏସମସ୍ତ ଏକତ୍ର ଜଳସହ ପେଷଣ କରି ୪ ରତି ପ୍ରମାଣେ ବଟିକା କରିବ । ଏହି ବଟିକା ଗରମ ଜଳ ସହ ସେବନକଲେ ଶୂଳ ବିନଷ୍ଟ ହୁଏ ।

(୨) ଅପାମାର୍ଗ କ୍ଷାର, ତେନ୍ତୁଳଶ୍ରେଧା କ୍ଷାର, ହରିଣଶୃଙ୍ଗଭସ୍ମ, ଶୋଧିତ ହିଙ୍ଗୁ, ଲୌହଭସ୍ମ, ଗନ୍ଧକ ଚୂର୍ଣ୍ଣ ଏସମସ୍ତ ମିଶାଇ ୨ ଅଣା ମାତ୍ରାରେ କର୍ପୂର ଜଳ ସହ ସେବନ କଲେ ଶୂଳ ଶାନ୍ତହୁଏ ।

(୩) ଶାମୁକା ଚୂର୍ଣ୍ଣ, ସୈନ୍ଧବ ଲବଣ, ବିଟ ଲୁଣ, ଯୁଆଣୀ ଏସମସ୍ତ ନାରିକେଳ ମଧ୍ୟରେ ପୁରାଇ ପ୍ରଚଣ୍ଡ ଘସି ନିଆଁରେ ନାରିକେଳ-ଟିକ ପୋଡ଼ିବ । ପାକପରେ ଶୀତଳ ହେଲେ ଔଷଧ ବାହାର କରି ଚୂର୍ଣ୍ଣ କରି ରଖିବ । ବେଦନାକାଳେ ଏଥିରୁ ୨ ଅଣା ଗରମଜଳ ସହ ସେବନ କଲେ ଶୂଳଶାନ୍ତ ହୁଏ ।

(୪) ଶୂଳ ବେଦନା କାଳରେ ବଡ଼ ଅଳାଇଚର ଦାନା, କର୍ପୂର ଓ ମିଶ୍ରି ମୁଖ ମଧ୍ୟରେ ରଖି କ୍ରମେ କ୍ରମେ ଚୂଟୁମିଲେ ବେଦନା ଶାନ୍ତ ହୁଏ ।

## ଶାସ୍ତ୍ରୀୟ ଔଷଧ--

ଶୂଳାନ୍ତକ ଚୂର୍ଣ୍ଣ, ଅମ୍ଳକ୍ଷାର, ଅଗ୍ନିଦୀପନ, ସିତାମଣ୍ଡୂର, ମହାଶଙ୍ଖ ବଟୀ, ଧାତ୍ରୀଲୌହ, ନାରକେଳ ଖଣ୍ଡ, ପୁନର୍ନବା ମଣ୍ଡୂର, ହରିତକୀଖଣ୍ଡ, ଆମଳକୀଖଣ୍ଡ, ଶୁଣ୍ଠୀଖଣ୍ଡ, ଶୂଳଗଜକେଶରୀ, ଶୂଳଗଜେନ୍ଦ୍ର, ପଚନାଦି ।



## ଶୋଥ

ଯକୃଦ୍‌ଦୋଷ, ହୃଦ୍‌ରୋଗ ରକ୍ତହୀନତା, ମୂତ୍ର ସହ ଓଜଃ କ୍ଷୟ ଇତ୍ୟାଦି କାରଣରୁ ଅଥବା କୌଣସି କଠିନ ରୋଗର ଅନ୍ତିମ ଉପସର୍ଗ ସ୍ୱରୂପ ହସ୍ତ ପଦ ମୁଖ ଉଦର ଇତ୍ୟାଦି ସ୍ଥାନରେ ଶୋଥ ବା ଫୁଲା ଜାତହୁଏ ।

କାରଣ ଅନୁସାରେ ଚିକିତ୍ସା କରିବା ଆବଶ୍ୟକ । ତଥାପି ସାଧାରଣତଃ ନିମ୍ନଲିଖିତ ଔଷଧଗୁଡ଼ିକ ବ୍ୟବହାର୍ଯ୍ୟ ଅଟେ ।

(୧) ଶ୍ୱେତପୁନର୍ଣ୍ଣବୀ ମୂଳ, ନିମଛାଲି, ପଟୋଳ, ଶୁଣ୍ଠୀ, କଟୁକୀ, ଗୁଳୁଚି, ଦାରୁହଳଦୀ, ହରିଡ଼ା ଏସମସ୍ତର କ୍ୱାଥ ପାନ କଲେ ଶୋଥ ଶାନ୍ତ ହୁଏ । ଉଦରାମୟ ଥିଲେ କଟୁକୀ ସ୍ଥାନରେ ଇନ୍ଦ୍ରଯବ ଓ ହରିଡ଼ା ସ୍ଥାନରେ ମୋଚରସ ବ୍ୟବସ୍ଥା କରିବ ।

(୨) ଶ୍ୱେତପୁନର୍ଣ୍ଣବୀ, ବେଲପତ୍ର, ସ୍ଥଳପଦ୍ମପତ୍ର ଏସମସ୍ତ ଛେଚି ରସ ବାହାର କରି ସେହି ରସ ୨ ରତି ଯବକ୍ଷାର ସହ ପାନ କଲେ ଶୋଥ ଶାନ୍ତ ହୁଏ ।

(୩) ଗୋକ୍ଷୁର, ଗମ୍ଭାରୀ ଛାଲି, ଶୁଣ୍ଠମୂଳ, ବେଲଚେର, ତେଜ, ହରିଡ଼ା ଏସମସ୍ତର କ୍ୱାଥ ମରିଚଚୂର୍ଣ୍ଣ ସହ ପାନ କଲେ ଶୋଥ ଦୂର ହୁଏ ।

(୪) ଯବକ୍ଷାର ଚୂର୍ଣ୍ଣ ଓ ଗୋଲମରିଚ ଚୂର୍ଣ୍ଣ ଏକତ୍ର ପ୍ରତ୍ୟହ ୨ । ୩ବାର କୋଇଲେଖା ରସ ବା ଶ୍ୱେତପୁରୁଣୀ ରସ ସହ ଖାଇଲେ ଶୋଥ ଶାନ୍ତହୁଏ ।

## ଶାସ୍ତ୍ରୀୟ ଔଷଧ-

ବଜ୍ରକ୍ଷାର, ଶଙ୍ଖପର୍ପଟି, ପଞ୍ଚାମୃତ ରସ, ପୁନର୍ନବାମଣ୍ଡୁର, ନାରଦୀୟ ଲକ୍ଷ୍ମୀ ବିଳାସ, ଶୋଥ ଶାର୍ଦ୍ଦୂଳ, ଶୁଷ୍କମୂଳାଦ୍ୟ ତୈଳ, ମହାଦଶମୂଳ ତୈଳ, ଶୋଥାରି ମଣ୍ଡୁର, ପ୍ରଚଣ୍ଡଭାସ୍କର ।

—○○○—

## ଶ୍ୱାସ

କଫ ଯୁକ୍ତ ବାୟୁ ଯେତେବେଳେ ପ୍ରାଣ ଓ ଉଦାନ ବାୟୁବହ ସ୍ରୋତଃ ସକଳକୁ ରୁଦ୍ଧ କରି ନିଜେ କଫ କର୍ତ୍ତୃକ ଅବରୁଦ୍ଧ ଓ ବିମାର୍ଗଗତ ହୋଇ ଇତସ୍ତତଃ ବିଚରଣ କରେ ଯେତେବେଳେ ଶ୍ୱାସ ଜାତ ହୁଏ ।

(୧) କୁଡ଼, କକଡ଼ାଶୃଙ୍ଗୀ, କୋଲୀମଞ୍ଜୀ ରସ, ପିପ୍ପଳୀ, ଜଟାମାଂସୀ, ବଚ, ବଡ଼ଅଲାଇଚ, ଯବକ୍ଷାର ଏସମସ୍ତ କଳାତୁଳସୀପତ୍ର ରସରେ ମର୍ଦ୍ଦନ କରି ୨ଅଣା ମାତ୍ରାରେ ଭେଙ୍କରସ ସହ ସେବନ କଲେ ପ୍ରବଳ ଶ୍ୱାସ ବନ୍ଦ ହୁଏ ।

(୨) ଅକରକରା, ଭେଙ୍ଗ, ଅକସନ୍ତ, କବାବଚିନି, ଗୁଳୁଚି ଦୂରାଲଭା, ତୁଳସୀମଞ୍ଜରୀ, କଳାହୁଦରୀ ମୂଳ, ବାହାଡ଼ା ଏସମସ୍ତର କ୍ୱାଥ ହିଙ୍ଗୁ ସହ ପାନ କଲେ ଶ୍ୱାସ ବନ୍ଦ ହୁଏ ।

(୩) ରସସିନ୍ଦୂର, ଗନ୍ଧକ, ମୟୂରପୁଚ୍ଛ ଭସ୍ମ, କାସିନ୍ଦ ମଞ୍ଜି ଚୂର୍ଣ୍ଣ ଏସମସ୍ତ ପୁରୁଣା ଘୃତସହ ସେବନ କଲେ ପ୍ରବଳ ଶ୍ୱାସ ଅଗ୍ନି ନିବାରିତ ହୁଏ ।

(୪) ହୁଡୁବ୍ୱାଫଳ ମଧ୍ୟରୁ ମଞ୍ଜି ବାହାର କରିଦେଇ ତାହା ମଧ୍ୟରେ ଅପୁ ପୂରାଇବ । ଏହି ଫଳର ଚତୁର୍ଦ୍ଦିଗରେ ହିଙ୍ଗୁ ଲଗାଇବ । ତା ଉପରେ ଜମ୍ବୁମଟି ବାଟି ପ୍ରଲେପ ଦେଇ ଖରାରେ ଶୁଖାଇବ । ଶୁଖିଗଲେ ଗୋବର ଘରୁଆରେ ପୁରାଇ କୋଳକାଠର କାଞ୍ଚିରେ ପୋଡ଼ିବ । ଶୀତଳ ହେଲେ ଔଷଧ ବାହାର କରି ଚୂର୍ଣ୍ଣ କରି ରଖିବ । ଏହାର ମାତ୍ରା ୧ ରତି । ଅନୁପାନ ଉଷ୍ଣଜଳ । ଏହା ଶ୍ୱାସ ରୋଗର ଗୋଟିଏ ଚମତ୍କାର ଔଷଧ ।

## ଶାସ୍ତ୍ରୀୟ ଔଷଧ-

ଶୃଙ୍ଗ୍ୟାଦି ଚୂର୍ଣ୍ଣ, ଶ୍ୱାସକୁଠାର, ଶ୍ୱାସାନ୍ତକ, ରସେନ୍ଦ୍ରଗୁଡ଼ିକା, ସ୍ୱର୍ଣ୍ଣ ପୁଷ୍ପାଶୁଗ, ଶ୍ୱାସ କାସ ଚିନ୍ତାମଣି, ଶ୍ୱାସାରିଗୁଡ଼ିକା, ଭାର୍ଗୀଗୁଡ଼ କନକାସବ, ଚ୍ୟବନପ୍ରାଶ, ବ୍ୟାଘ୍ରୀ ହରିତକୀ ।

—୦(୦)୦—

## ସ୍ୱପ୍ନଦୋଷ

ପ୍ରଥମ ଯୌବନର ଦୁର୍ବୁଦ୍ଧି ବଶ୍ୟତାଃ ଅସ୍ୱାଭାବିକ ଉପାୟରେ ଯାହାଙ୍କ ଶୁକ୍ରକ୍ଷୟ କରାଯାଏ ତାହାର ବିଷମୟ ପରିଣାମ ସ୍ୱପ୍ନଦୋଷ । ମଳମୂତ୍ର ତ୍ୟାଗକାଳେ, ସାମାନ୍ୟ କୁନ୍ଥନେ, ସ୍ତ୍ରୀମାନଙ୍କର ଦର୍ଶନ ସ୍ପର୍ଶନ ଚୁମ୍ବନ ହେତୁ ବା ଉତ୍ତେଜକ ଗଳ୍ପ ଶ୍ରବଣ ହେତୁ ବୀର୍ଯ୍ୟ ସ୍ଖଳନ ହୋଇ

ଥାଏ ବା ଶିଶ୍ନାଗ୍ରରେ ତରଳ ସ୍ରାବ ଉପସ୍ଥିତ ହୁଏ । ନିଦ୍ରାବସ୍ଥାରେ ଅନେକ ସମୟରେ ବିନାସ୍ୱପ୍ନରେ ଶୁକ୍ରସ୍ଖଳିତ ହୁଏ । ଅଥବା ସ୍ୱପ୍ନ ଦେଖିବା କଥା ମନେ ରହେ ନାହିଁ । କେବଳ ବସ୍ତ୍ରରେ ଦାଗ ରହିଥିବା ହେତୁ ପ୍ରାତଃକାଳେ ତାହା ଦେଖି ହେଉ ହୁଏ । ଅନେକ ସମୟରେ ଦିବସରେ ନିଦ୍ରାଗଲେ ମଧ୍ୟ ଏହି ଦୋଷ ଦେଖାଯାଏ ।

ଶୁକ୍ର ଏତେ ତରଳ ହୋଇ ପଡ଼େ ଯେ ଲିଙ୍ଗର ଶିଥିଳ ଅବସ୍ଥାରେ ମଧ୍ୟ ତାହାର ସ୍ଖଳନ ହୋଇଥାଏ । ମସ୍ତିଷ୍କ ଦୌର୍ବଲ୍ୟ, ଦୃଷ୍ଟି କ୍ଷୀଣତା, ସ୍ମୃତିଶକ୍ତି ଲୋପ, ବିନାକାରଣରେ ଅନ୍ୟମନସ୍କ ହେବା ଓ ମାନସିକ ବିଶୃଙ୍ଖଳା, ଉତ୍ସାହହୀନତା, ଜନତାପ୍ରତି ବିଦ୍ୱେଷ, ଅତିରିକ୍ତ ଭୀରୁତା, ମଥା ଘୂର୍ଣ୍ଣନ, ହୃଦୟ ବ୍ୟଥା, ଅଳ୍ପ ଶ୍ରମେ ବହୁକ୍ଲାନ୍ତି, ଯକୃଦ୍‌ଦୋଷ, କୋଷ୍ଠ ବଦ୍ଧତା ଓ ନାନା ଜାତୀୟ ପ୍ରସ୍ରାବ ଦୋଷ ପ୍ରଭୃତି ବହୁ ଉପସର୍ଗ ଏହି ସ୍ୱପ୍ନ ଦୋଷରୁ ସୃଷ୍ଟି ହୋଇଥାଏ । ସ୍ୱପ୍ନଦୋଷ ଶୁଣିବାକୁ ସେତେ କର୍କଶ ନୁହେଁ । କିନ୍ତୁ ଏପରି ରୋଗ ଜଗତରେ ନାହିଁ ଯାହାକି ଏଥିରୁ ଜାତ-ହୋଇ ନ ପାରେ । ମନୁଷ୍ୟ ଜୀବନର ଚିର କଳଙ୍କକାରୀ ଦୁଶ୍ଚିକିତ୍ସ୍ୟ ଧ୍ୱଜଭଙ୍ଗ ରୋଗ ପର୍ଯ୍ୟନ୍ତ ଏଥିରୁ କେବଳ ଉତ୍ପନ୍ନ ।

(୧) ଦୁବଚେର, ବଉଳମଞ୍ଜି ଚପ, ଅଳା, କର୍ପୂର ସମସ୍ତ ସମଭାଗରେ ପୁରୁଣା ଗୁଡ଼ ସହ ବାଟି କୋଳିମଞ୍ଜି ପରି ବଟିକା କରିବ । ଏହା ରାତ୍ରରେ ଶୋଇବା ସମୟରେ ଥଣ୍ଡା ପାଣି ସହ ସେବନ କଲେ ସ୍ୱପ୍ନଦୋଷ ହୁଏନାହିଁ ।

(୨) ଶିମୁଳୀ ମୂଳ ଚୂର୍ଣ୍ଣ, ବଙ୍ଗ ଭସ୍ମ, କବାବ ଚେନି; ଗୁଲ୍ଲୁଚୀ-ସାର ଏସମସ୍ତ ଏକତ୍ର ଏକ ଅଣା ମାତ୍ରାରେ ଅଁଳାରସ ସହ ପ୍ରତ୍ୟହ ଦୁଇ ବେଳା ଓ ରାତ୍ରି ଭୋଜନାନ୍ତେ ଥରେ ଏପରି ଅଭ୍ୟାସ କରି ସେବନ କଲେ ସ୍ୱପ୍ନଦୋଷ ହୁଏନାହିଁ ।

(୩) ଘୃତକୁମାରୀ ରସରେ ପାନଗଛର ଚେର ବାଟି ଚିନି ସହ ପ୍ରତ୍ୟହ ଦୁଇ ବେଳା ସାତ ଦିନ ସେବନ କଲେ ସ୍ୱପ୍ନଦୋଷ ଦୂର ହୁଏ ।

**ଶାସ୍ତ୍ରୀୟ ଔଷଧ**-ଧାତୁଦୌର୍ବଲ୍ୟ ଦେଖ




—(୮)—

## ହିକ୍କା

ଅନିୟମିତ ପାନ ଓ ଭୋଜନ ଦ୍ୱାରା ବାୟୁ କଣ୍ଠାନୁଗତ ହୋଇ ହିକ୍କା ଉତ୍ପାଦନ କରେ ।

(୧) ହିଙ୍ଗୁ ଓ ଗୋଲମରିଚ ଘୃତସହ ବାଟି କାଗଜରେ ଲେପି ଗୋଟିଏ ପିକା ବା ବିଡ଼ି ପରି ଗଢ଼ିବ । ଏହାର ଗୋଟିଏ ଦିଗରେ ନିଆଁ ଲଗାଇ ଅପର ଦିଗରେ ନାସିକାଦ୍ୱାରା ଧୂମ ପାନ କଲେ ହିକ୍କା ବନ୍ଦହୁଏ ।

(୨) ରଜନୀଗନ୍ଧା ଫୁଲ ରସରେ ୫,୬ ରତି ଯବକ୍ଷାର ଗୋଳି ପାନ କଲେ ତତ୍କ୍ଷଣାତ୍ ହିକ୍କା ବନ୍ଦହୁଏ ।

(୩) କଣ୍ଟକାରୀ, ବାହାଡ଼ା, ନବଶାକର ଜଳସହ ବାଟି ପାନ-କଲେ ଅତିଶୀଘ୍ର ହିକ୍କା ବନ୍ଦହୁଏ ।

(୪) ନାଭି ଉପରେ ଥଣ୍ଡା କାଂସ୍ୟପାତ୍ର ବା ବରଫ ଖଣ୍ଡେ ରଖିଲେ ହିକ୍କା ବନ୍ଦହୁଏ ।

**ଶାସ୍ତ୍ରୀୟ ଔଷଧ**-

ପିପ୍ପଲ୍ୟାଦି ତୈଳ, ଶଙ୍ଖପର୍ପଟୀ, ଶ୍ୱାସାରି ଚୂର୍ଣ୍ଣ, ବଜ୍ରକ୍ଷାର, ବାସାଚନ୍ଦନାଦି ତୈଳ ।

—•୦•—

# ହୃଦ୍ରୋଗ

ଅତି ଉଷ୍ଣ, ଗୁରୁ, କଷାୟ ଓ ତିକ୍ତ ଭୋଜନ, ଅତ୍ୟଧିକ ପରିଶ୍ରମ, ଆଘାତ ପ୍ରାପ୍ତି, ଅଧିଶନ, ନିରନ୍ତର ଚିନ୍ତା ଇତ୍ୟାଦି କାରଣରୁ ହୃଦ୍ରୋଗ ଜାତ ହୁଏ । କୁପିତ ବାତାଦି ଦୋଷାତ୍ରୟ ହୃଦୟରେ ଉପସ୍ଥିତ ହୋଇ ତତ୍ରସ୍ଥ ରସକୁ ଦୂଷିତ କରି ନାନାପ୍ରକାର ବେଦନା ହୃଦୟରେ ଜାତ କରାଏ ।

(୧) ଜଟାମାଂସୀ, ଅର୍ଜୁନ ଛାଲି, ଅଶ୍ୱଗନ୍ଧା, ଜୀବନ୍ତ, ଶାଳିବା-ମୂଳ, ଶାଳପର୍ଣ୍ଣୀ, ଶୁଣ୍ଠୀ ଏସମସ୍ତ ସହ ଦୁଗ୍ଧ ପାକ କରି ଏହି ଦୁଗ୍ଧରେ ୩ । ୪ ରତି ପୁରାତନ ଘୃତ ମିଶାଇ ପାନ କଲେ ହୃତ୍‌ପିଣ୍ଡ ଓ ଫୁସ୍‌ଫୁସ୍‌ରେ ଥିବା ସମସ୍ତ ବିକାର, ଶାନ୍ତ ହୁଏ ।

(୨) ଘୃତ ବା ଦୁଗ୍ଧ ସହ ଅର୍ଜୁନ ଛାଲି ଚୂର୍ଣ୍ଣ ସେବନ କଲେ ହୃଦ୍ରୋଗ ନିବାରିତ ହୁଏ ।

(୩) ହରିଡ଼ା, ବଚ, ରାସ୍ନା, ପିପ୍ପଳୀ, ଶୁଣ୍ଠୀ, ଗନ୍ଧଶୁଣ୍ଠୀ, ପୁଷ୍କର-ମୂଳ (ଅଭାବେ କୁଡ଼) ଏସମସ୍ତର ଚୂର୍ଣ୍ଣ ଉଷ୍ଣଦୁଗ୍ଧ ସହ ପାନ କଲେ ହୃଦ୍ରୋଗ ବିଲୟ ପ୍ରାପ୍ତ ହୁଏ ।

## ଶାସ୍ତ୍ରୀୟ ଔଷଧ--

ନାଗାର୍ଜୁନାଭ୍ର, କଲ୍ୟାଣ ସୁନ୍ଦର ରସ, ଅର୍ଜୁନ ଘୃତ, ବିଶ୍ୱେଶ୍ୱର ରସ, ସର୍ବ ଜ୍ୱରାଙ୍କୁଶ, ମକରଧ୍ୱଜ, ଅର୍ଜୁନାରିଷ୍ଟ ।



# ଔଷଧ ବିଭାଗ

## ଅଗସ୍ତ୍ୟ ହରିତକୀ-

ଦଶମୂଳ, ବାଇଭୂଙ୍କ ମଞ୍ଜି, ଶଙ୍ଖ ପୁଷ୍ପୀ ଗନ୍ଧଶୁଣ୍ଠୀ, ବାଡ଼ିଅଳା, ଗଜପିପ୍ପଳୀ, ଅପାମାର୍ଗ, ପିପ୍ପଳୀମୂଳ, ଚିତ୍ରକମୂଳ, ବ୍ରହ୍ମଯଷ୍ଟି, ପୁଷ୍କରମୂଳ, ପ୍ରତ୍ୟେକ ୨ ପଲ, ଶ୍ଳଥପାଠଲୀବନ୍ଧ, ଯବ ୮ ସେର ଓ ଜଳରେ ପାକ କରିବ । ଚତୁର୍ଥାଂଶ ଅବଶିଷ୍ଟ ରଖି ଏବଂ ଯବଗୁଡ଼ିକ ସିଦ୍ଧ ହେଲେ ଓହ୍ଲାଇ ଛାଣିବ । ସିଦ୍ଧ ହରିତକୀଗୁଡ଼ିକ ଏକ ସେର ଘୃତ ଓ ଏକସେର ତୈଲରେ ଭାଜି ଉକ୍ତ କ୍ୱାଥରେ ନିକ୍ଷେପ କରିବ ଏବଂ ତହିଁରେ ୧୨॥ ସେର ଗୁଡ଼ ପ୍ରକ୍ଷେପ କରି ପାକ କରିବ । ଘନୀଭୂତ ହେଲେ ପିପ୍ପଳୀଚୂର୍ଣ୍ଣ ଅର୍ଦ୍ଧସେର ପ୍ରକ୍ଷେପ କରି ପାକ ଶେଷ କରିବ । ଶୀତଳ ହେଲେ ତହିଁରେ ମଧୁ ଏକ ସେର ମିଶାଇବ । ପ୍ରତ୍ୟହ ୨ ତୋଲା ମାତ୍ରାରେ ୨ଟି ସିଦ୍ଧ ହରିତକୀ ସହ ଏହି ଲେହ ସେବନ କଲେ ପଞ୍ଚବିଧ କାସ, ଶ୍ୱାସ, କ୍ଷୟ, ହିକ୍କା, ବିଷମଜ୍ୱର, ଗ୍ରହଣୀ, ଅର୍ଶଃ, ହୃଦ୍ରୋଗ, ଅରୁଚି, ପୀନସ ଇତ୍ୟାଦି ରୋଗ ଶାନ୍ତ ହୁଏ ଏବଂ ବଳ, ବର୍ଣ୍ଣ ଓ ଆୟୁଃ ବୃଦ୍ଧି ପ୍ରାପ୍ତ ହୁଏ ।

## ଅଗ୍ନିକୁମାର ରସ-

ପାରଦ, ଗନ୍ଧକ, ଠଙ୍କଣାଖଇ, ଯୁଆଣୀ ପ୍ରତ୍ୟେକ ୧ ଭାଗ, ଶୋଧିତ ମହୁରି, କଉଡ଼ିଭସ୍ମ, ଶଙ୍ଖଭସ୍ମ, ତ୍ରୀଲବଣମିଶ୍ରିତ ପ୍ରତ୍ୟେକ ୩ ଭାଗ, ମରିଚ ୮ ଭାଗ ଏସମସ୍ତ ଏକତ୍ର ଅଦାରସ ଓ ଲେମ୍ବୁରସରେ ଭାବନା ଦେଇ ୨ରତି ପ୍ରମାଣେ ବଟିକା କରିବ ।

ଅନୁପାନ—କୋଷ୍ଠ ଶୁଦ୍ଧ ସକାଶେ ଗରମଜଳ ଓ କୋଷ୍ଠ ବଦ୍ଧ ସକାଶେ ଚୂନଜଳ । ଏହା ଅଗ୍ନିମାନ୍ଦ୍ୟ, ଅମ୍ଳପିତ୍ତ ଗ୍ରହଣୀ, ଆଧ୍ମାନ ଇତ୍ୟାଦି ରୋଗକୁ ହରଣ କରେ ।

## ଅଗ୍ନିତୁଣ୍ଡୀବଟୀ-

ପାରଦ, ଗନ୍ଧକ, ବତ୍ସନାଭ, ଅଜମୋଦା, ହରଡ଼ା, ବାହାଡ଼ା ଅଁଳା ସାଚକ୍ଷାର, ଯବକ୍ଷାର, ଚିତ୍ରକମୂଳ, ସୈନ୍ଧବ, କରକଚଲବଣ, ବିଡ଼ଙ୍ଗ, ଭାଙ୍ଗଣାଖଇ ପ୍ରତ୍ୟେକ ସମଭାଗ, ସର୍ବସମାନ ଶୋଧିତ କୋଚିଲା ଚୂର୍ଣ୍ଣ ଏସମସ୍ତ ଏକତ୍ର ଜମ୍ବୀର ରସରେ ମର୍ଦ୍ଦନ କରି, ୨ ରତି ପ୍ରମାଣେ ବଟିକା କରିବ । ଅନୁପାନ ମୁଥାରସ, କର୍ପୂର ଜଳ ବା ତ୍ରିଫଳାକ୍ୱାଥ, ଏହାର ସେବନରେ ଅଜୀର୍ଣ୍ଣ, ଗ୍ରହଣୀ, ଅମ୍ଳପିତ୍ତ, ଶୂଳ, ଆଧ୍ମାନ, ଆମବାତ ଇତ୍ୟାଦି ରୋଗ ଶାନ୍ତ ହୁଏ ।

## ଅଗ୍ନିଦୀପ୍ତି ଚୂର୍ଣ୍ଣ-

ଶୁଣ୍ଠୀ, ପିପ୍ପଳୀ, ମରିଚ, ଯୁଆଣୀ, ସୈନ୍ଧବ, ଜୀରା, କଳାଜୀରା ପ୍ରତ୍ୟେକ ସମଭାଗ ସମସ୍ତର ଅର୍ଦ୍ଧେକ ଅମ୍ଳବେତସ ଏସମସ୍ତ ଚୂର୍ଣ୍ଣ କରି ୪ ଅଣା ମାତ୍ରାରେ ସେବନ କରି ଉଷ୍ଣଜଳ ପାନ କରିବ, ଏହାର ସେବନରେ ଅଜୀର୍ଣ୍ଣ, ଅଗ୍ନିମାନ୍ଦ୍ୟ, ଶୂଳ, ଇତ୍ୟାଦି ରୋଗ ଉପଶମ ହୁଏ ।

## ଅଗ୍ନିମୁଖ ଚୂର୍ଣ୍ଣ-

ଯବକ୍ଷାର, ସାଚକ୍ଷାର, ଚିତ୍ରକମୂଳ, ଅରଖମୂଳ, କଣ୍ଟକାମୂଳ, ପଞ୍ଚଲବଣ, ଛୋଟ ଅଳାଇଚ, ତେଜପତ୍ର, ବ୍ରହ୍ମଯଷ୍ଟୀ, ବିଡ଼ଙ୍ଗ, ହିଙ୍ଗୁ, କୁଡ଼, ଗନ୍ଧଶୁଣ୍ଠୀ, ଦାରୁହଳଦୀ, ତିହୁଡ଼ିମୂଳ, ମୁଥା, ବଚ, ଇନ୍ଦ୍ରଯବ

ଅଁଳା, ଜୀର, ଗଜପିପ୍ପଳୀ, କଳାଜୀର, ଅମ୍ଳବେତସ, ତାଳୁଜ, ଯୁଆଣୀ, ଦେବଦାରୁ, ହରଡ଼ା, ଭୃଭୂଣୀ, ଶାଙ୍ଖବାମୂଳ, ଯୂନାଗ୍ରପଳ, ରାଣିଡ଼ାଙ୍ଗ-ଖାର, ପାଟ୍ଠଳୀଖାର, ସଜନାଖ୍ଳଖାର, କୋଇଲେଖାଖାର, ପଳାସଖାର, ମଣ୍ଡୂରଭସ୍ମ, ଏସମସ୍ତ ସମଭାଗରେ ଏକତ୍ର ଲେମ୍ବୁରସରେ ୩ ଦନ କାଞ୍ଜିପାଣିରେ ୩ ଦନ ଓ ଅଦାରସରେ ୩ ଦନ ଭାବନା ଦେଇ ୨ ରତ୍ତି ପ୍ରମାଣେ ବଟିକା କରବ । ଅନୁପାନ ପ୍ରଭେଦରେ ଏହା ଅଜୀର୍ଣ୍ଣ, ଅଧ୍ମାନ, ପ୍ଲୀହା, ଯକୃତ୍, ଅମ୍ଳପିତ୍ତ, ଶୂଳ ଇତ୍ୟାଦ ରୋଗକୁ ବନାଶ କରେ ।

## ଅବିପତ୍ତିକର ଚୂର୍ଣ୍ଣ-

ତ୍ରିକଟୁ, ତ୍ରୀଫଳା ମୁଥା, ବଡ଼ଙ୍ଗ, ଅଳାଇଚ, ତେଜପତ୍ର ପ୍ରତ୍ୟେକ ୧ ଭାଗ, ଲବଙ୍ଗ ୧୦ ଭାଗ, ତହୁଡ଼ ମୂଳ ୪୦ ଭାଗ ଚେନ ୬୦ ଭାଗ ଏସମସ୍ତ ଏକତ୍ର ଚୂର୍ଣ୍ଣ କର ମିଶାଇ ସ୍ନିଗ୍ଧ ଭାଣ୍ଡରେ ରଖିବ । ଏହା ଭୋଜନର ଆଦ୍ୟରେ ଓ ଶେଷରେ ଉପଯୁକ୍ତ ମାତ୍ରାରେ ସେବନ କଲେ ଅମ୍ଳପିତ୍ତ, ଶୂଳ, ମଳମୂତ୍ରରୋଧ, ଅଗ୍ନିମାନ୍ଦ୍ୟ, ପ୍ରମେହ, ଅର୍ଶ ଇତ୍ୟାଦ ରୋଗ ଶାନ୍ତହୁଏ । ଅନୁପାନ—ଘୃତ, ମଧୁ ଓ ପଇଡ଼ପାଣି ।

## ଅଭୟାଲବଣ-

ପାଳଧୂଆ ଛାଲ, ପଳାଶ ଛାଲ, ଅରଖମୂଳ ଛାଲ, ସିଜୁଛାଲ, ଅପାମାର୍ଗ ଛାଲ, ଚତ୍ରକ ମୂଳ, ବରୁଣ ଛାଲ, ଗମ୍ଭାରୀଛାଲ, ଶ୍ୱେତପୁରଣୀ, ଗୋଖରୁ, ଭେଙ୍ଗ, ଅକରାନ୍ତ, କଣ୍ଟାମାରଷ, ଅପରାଜିତା, କେରୁଆ ଛାଲ, ଜନ୍ମିଡ଼ାଙ୍କ ଏସମସ୍ତ ସମଭାଗରେ ଉଦୂଖଳରେ କୁଟି ହାଣ୍ଡି ମଧରେ ରଖି ଡାଲକାଠ ଜାଳ ଦ୍ୱାରା ଖାର ପ୍ରସ୍ତୁତ କରବ । ଏହଖାର ୨ ସେର ୬୪ ସେର ଜଳ ସହ ପାକ କରବ । ୧୬ ସେର ଜଳ ଅବଶିଷ୍ଟ ରଖି

ଓହ୍ଲାଇବ, ସେହି କ୍ଷାରଜଳ ଛାଣି ସେଥିରେ ସୈନ୍ଧବ ୨ ସେର, ହରଡ଼ା ଚୂର୍ଣ୍ଣ ୧ ସେର, ଗୋମୂତ୍ର ୧୬ ସେର ମିଶାଇ ପୁନଃ ପାକ କରିବ। ଘନ ହେଲେ ଓହ୍ଲାଇ ତହିଁରେ କଳାଜୀରା, ତ୍ରିକଟୁ, ହିଙ୍ଗୁ, ଯୁଆଣୀ, କୁଡ଼, ଗନ୍ଧଶୁଣ୍ଠି ପ୍ରତ୍ୟେକର ଚୂର୍ଣ୍ଣ ୪ ତୋଳା ପରମାଣେ ଦେଇ ମିଶାଇ ରଖିବ। ଏହା ଯକୃତ୍ ପ୍ଲୀହା ରୋଗରେ ପ୍ରଶସ୍ତ। ଏହା ପାଚକ ସାରକ କୋଷ୍ଠାଶ୍ରିତ ବାୟୁ ନାଶକ, ଗୁଳ୍ମ, ଅଷ୍ଠୀଳା ଶୂଳ ଇତ୍ୟାଦି ରୋଗର ଅବ୍ୟର୍ଥ ମହୌଷଧ। ଅନୁପାନ–ଯକୃତ୍ ପ୍ଲୀହାରେ ଗରମଜଳ, କୋଷ୍ଠାଶ୍ରିତ ବାୟୁରେ ତ୍ରିଫଳାକ୍ୱାଥ, ଗୁଳ୍ମରୋଗରେ ହରଡ଼ାକ୍ୱାଥ ବା ତନ୍ତୁଡ଼ି କ୍ୱାଥ। ମାତ୍ରା—୨ ଅଣାରୁ ୪ ଅଣା ପର୍ଯ୍ୟନ୍ତ। ଏହା ତାର୍ପିନତେଲସହ ଗୋଳ ଯକୃତ୍‌ଉପରେ ଓ ଅଦାରସ ସହ ଗୋଳ ପ୍ଲୀହା ଉପରେ ପ୍ରଲେପ ଦେଲେ ପୀଡ଼ା ଶାନ୍ତହୁଏ।

## ଅମୃତପ୍ରାଶ ଘୃତ-

ଘୃତ ୪ ସେର, କ୍ୱାଥାର୍ଥ ଛାଗମାଂସ ୧୬୪ ସେର, ଜଳ ୬୪ ସେର ଶେଷ ୧୬ ସେର, ଅଶ୍ୱଗନ୍ଧ ୧୨୪ ସେର, ଜଳ ୬୪ ସେର, ଶେଷ ୧୬ ସେର, ଛାଗଦୁଗ୍ଧ ୧୬ ସେର, ମୂର୍ଚ୍ଛାର୍ଥ—କୁଙ୍କୁମ ୪ ତୋଳା, କଳ୍କ-ଦ୍ରବ୍ୟ—ବାଉଁଅଁଳା, ଚନ୍ଦନ, ଅଶ୍ୱଗନ୍ଧା, ଗୁଳୁଚି, ଗୋଖରା, କେଶରାଜ, ତ୍ରିକଟୁ, ଧନିଆ, ତାଳମଞ୍ଜି, ତ୍ରିଫଳା, ମୁଗନାଭି, ବାଇଡ଼ଙ୍କମଞ୍ଜି, ମେଦ, ମହାମେଦ, କୁଡ଼, ଜୀବକ, ଋଷଭକ, ଗନ୍ଧଶୁଣ୍ଠି, ଦାରୁହଳଦୀ, ପ୍ରିୟଙ୍ଗୁ, ମଞ୍ଜିଷ୍ଠା, ତଗରପାଦୁକା, ତାଳିଶପତ୍ର, ଅଳାଇଚ, ତେଜପତ୍ର, ଗୁଡ଼ତ୍ୱକ, ନାଗେଶ୍ୱର, ଜାଇଫୁଲ, ରେଣୁକା, ସରଳକାଠ, ଜାଇପତ୍ରୀ, ଛୋଟ-ଅଳାଇଚ, ନେଳକଇଁଫୁଲ, ଷାରବା, ଫୁଟଫୁଟିକାମୂଳ, ଜୀବନ୍ତୀ, ଋଦ୍ଧି, ବୃଦ୍ଧି, ଡମ୍ବିର, ପ୍ରତ୍ୟେକ ୨ ତୋଳା, ପାକାନ୍ତେ ଶୀତଳ ହେଲେ ଘୃତ ଛାଣି ତହିଁରେ ଏକସେର ଖାକର ମିଶାଇ ରଖିବ। ଏହା ସ୍ନାୟୁମଣ୍ଡଳର

ବଳକାରକ । ମସ୍ତିଷ୍କ ପୋଷକ, ଶୁକ୍ରଜନକ, ପୁଷ୍ଟିକର, କ୍ଷୟନାଶକ, ପୁରୁଷତ୍ୱହାନିର ଓ ନଷ୍ଟଶୁକ୍ରର ଅଦ୍ଭୁତ କୃଷ୍ଣ ଔଷଧ । ସ୍ତ୍ରୀମାନଙ୍କର ଜରାୟୁଦୋଷ ନିବାରକ, ନାନାପ୍ରକାର ବାତ ବ୍ୟାଧିର ପ୍ରତୀକାରକ । ମାତ୍ରା ୬ ଅଣାଠାରୁ ୧୨ ଅଣା ପର୍ଯ୍ୟନ୍ତ । ଅନୁପାନ—ଈଷଦୁଷ୍ଣ ଦୁଗ୍ଧ ଓ ଅଳ୍ପ ମଣ୍ଡ ।

## ଅମ୍ଳପିତ୍ତକୁଠାର-

ଏହା ରକ୍ତଦୋଷ ନାଶକ, ରକ୍ତ ପରିଷ୍କାରକ, ନୂତନରକ୍ତଜନକ ଏବ ଅମ୍ଳପିତ୍ତ, କୁଷ୍ଠ, ବାତରକ୍ତ, ଉପଦଂଶ, ମେହ ମଣ୍ଡୁ, କଚ୍ଛୁ, ପାମା, ବିଚର୍ଚ୍ଚିକା, ଦୁଷ୍ଟବ୍ରଣ, ନାଡ଼ୀବ୍ରଣ ଇତ୍ୟାଦି ରୋଗର ଅବ୍ୟର୍ଥ ମହୌଷଧ । ଏହା ଆମ୍ଭର ବହୁବାର ପରୀକ୍ଷିତ ।

## ଅମ୍ଳପିତ୍ତାନ୍ତକ ମୋଦକ-

ଶୁଣ୍ଠୀ ୮ ପଲ ପିପ୍ପଲୀ ୮ ପଲ, ତାମ୍ବୂଲ ଚୂର୍ଣ୍ଣ ୮ ପଲ ଘୃତ ୪ ସେର, ଦୁଗ୍ଧ ୪ ସେର ଏସମସ୍ତ ଯଥା ବିଧି ପାକ କରିବ । ପ୍ରକ୍ଷେପାର୍ଥ—ଲବଙ୍ଗ, ନାଗେଶ୍ୱର, କୁଡ଼, ଯୁଆଣୀ, କଳାଜୀରା, ବଚ, ରକ୍ତଚନ୍ଦନ, ଯଷ୍ଟିମଧୁ, ରାସ୍ନା, ଦେବଦାରୁ, ତ୍ରିଫଳା, ତେଜପତ୍ର, ଅଳାଇଚ, ଗୁଡ଼ତ୍ୱକ ଚୈ ଲ୍ଲବ, ଦୁରୂଷା, ଗଜଶୁଣ୍ଠୀ କାଫଡ଼, ଜଟାମାଂସୀ, ଅଭ୍ରଭସ୍ମ, ବଙ୍ଗଭସ୍ମ, ରୌପ୍ୟଭସ୍ମ, ତାଳୀଶପତ୍ର, ପଦ୍ମକାଠ, ମୂର୍ଗାମୂଳ, ବରାହକ୍ରାନ୍ତାମୂଳ, ବଂଶଲୋଚନା, ପିପ୍ପଲାମୂଳ, ସନ୍ଧକ, ଶତାବରୀ, ଦାଶକେରଣ୍ଡା, ଜାଇଫଳ ଜାଇପତ୍ରୀ, କାକୋଲା, ମୁଥା ପିପ୍ପଳୀ, କର୍ପୂର, ବିଡ଼ଙ୍ଗ, ଅଜମୋଦା ବାଡ଼ଅଁଳା, ଗୁଳୁଚୀ, ବାଇଚୁଙ୍କମଞ୍ଜୀ, କୋଇଲେଖାମଞ୍ଜୀ, ଶୁକ୍ଳଚନ୍ଦନ, ଲୌହଭସ୍ମ, କଂାସ୍ୟଭସ୍ମ, ପ୍ରତ୍ୟେକ ୨ ତୋଳା, ସ୍ୱର୍ଣ୍ଣଭସ୍ମ ୧ ତୋଳା । ଏହି ମୋଦକ ଯଥାବିଧାନେ ପାକ କରି ସେବନ କଲେ ଅମ୍ଳପିତ୍ତ, ଛର୍ଦ୍ଦି, ମୂର୍ଚ୍ଛା, ଦାହ, ପ୍ରମେହ, ମୂତ୍ରକୃଚ୍ଛ୍ର, ମୃତକା ପ୍ରଭୃତି ରୋଗ ଉପଶମ ହୁଏ ।

## ଅର୍ଜୁନଘୃତ

ଗବ୍ୟଘୃତ ୪ ସେର କ୍ୱାଥାର୍ଥ—ଅର୍ଜୁନଛାଲ, ୮ ସେର, ଜଳ ୬୪ ସେର, ଶେଷ ୧୬ ସେର, କଲ୍କାର୍ଥ ଅର୍ଜୁନଛାଲ ୧ ସେର, ଏହି ଘୃତ ଯଥା ବିଧି ପାକ କରି ସେବନ କଲେ ସମସ୍ତ ପ୍ରକାର ହୃଦ୍ରୋଗ ଓ ହୃଦଯ୍‌ର ସମସ୍ତ ଦୁର୍ବଳତା, ବ୍ୟଥା ଦୂର ହୁଏ

## ଅର୍ଜୁନାରିଷ୍ଟ

ଅର୍ଜୁନ ଛାଲ ୪ ସେର, ଜଳ ୪୦ ସେର, ପାକାନ୍ତେ ଶେଷ ୧୦ ସେର, କଲ୍କାର୍ଥ—ଅର୍ଜୁନଛାଲ, ଦଶମୂଳ, କାକୋଳ, କ୍ଷୀରକାକୋଳ, ରକ୍ତଚନ୍ଦନ, ବାଡ଼ିଅଁଳା, ମହାବଳା ପ୍ରତ୍ୟେକ ୧ ପଲ, ଗୁଡ଼ ୪ ସେର ଏସମସ୍ତ ଏକତ୍ର ଆବୃତ ପାତ୍ରରେ ଏକ ମାସ ରଖି ପରେ ବାହାର କରି ଛାଣି ଆବୃତ ପାତ୍ରରେ ରଖିବ । ମାତ୍ରା—ଅଧ ଅଉନ୍ସ. ଏହାର ସେବନରେ ସମସ୍ତ ପ୍ରକାର ହୃଦ୍‌ରୋଗ, ହୃଦଯ୍ ବ୍ୟଥା, ଅମ୍ଳପିତ୍ତ ଇତ୍ୟାଦ ଶାନ୍ତହୁଏ ।

## ଅର୍ଶଃକୁଠାର-

ଶୋଧିତ ପାରଦ ୮ ତୋଳା, ଶୋଧିତ ଗନ୍ଧକ, ଲୌହଭସ୍ମ, ତାମ୍ରଭସ୍ମ ଦନ୍ତି, ତ୍ରିକଟୁ ଓଲ, ପ୍ରତ୍ୟେକ ୧୬ ତୋଳା, ବଂଶଲୋଚନା, ଅପାମାର୍ଗ ଖାର, ଯବକ୍ଷାର, ସୈନ୍ଧବ. ପ୍ରତ୍ୟେକ ୪୦ ତୋଳା ସିଜୁକ୍ଷୀର ୧ ସେର (୬୪ ତୋଳା) ଏ ସମସ୍ତ ଏକତ୍ର ୪ ସେର ଗୋମୂତ୍ର ସହ ଅଗ୍ନିରେ ପାକ କରିବ । ମାତ୍ରା—୨ ମଷା ଏହାର ସେବନରେ ସମସ୍ତ-ପ୍ରକାର ଅର୍ଶଃ ବିନଷ୍ଟ ହୁଏ ।

## ଅଶୋକ ଘୃତ-

ଘୃତ ୪ସେର, କ୍ୱାଥାର୍ଥ—ଅଶୋକ ଛାଲ ୧ ସେର, ଜଳ ୧୬ ସେର, ପାକାନ୍ତେ ଶେଷ ୪ ସେର, ଜୀରା ୨ ସେର, ଜଳ ୧୬ ସେର, ପାକାନ୍ତେ ଶେଷ ୪ ସେର, ତଣ୍ଡୁଳୋଦକ ୪ ସେର, ଛାଗଦୁଗ୍ଧ ୪ ସେର, କେଶରାଜ ରସ ୪ ସେର, କଲ୍କାର୍ଥ—ଜୀବକ, ଋଷଭକ ମେଦ, ମହାମେଦ, କାକୋଲୀ, କ୍ଷୀର କାକୋଲୀ, ମୁଦ୍ଗପର୍ଣ୍ଣୀ, ମାସପର୍ଣ୍ଣୀ, ଜୀବନ୍ତୀ, ଯଷ୍ଟିମଧୁ, ପିଆଲମଞ୍ଜୀ, ପରୁଷକଫଳ, ରସାଞ୍ଜନ ଅଶୋକମୂଳ, ଦ୍ରାକ୍ଷା ଶତାବରୀ, କାଣିଲେଉଟିଆମୂଳ ପ୍ରତ୍ୟେକ ୪ ତୋଳା, ପାକାନ୍ତେ ଶୀତଳ ହେଲେ ଚିନି ୧ ସେର ମିଶାଇବ, ଅନୁପାନ ଉଷ୍ଣଦୁଗ୍ଧ ମାତ୍ରା—ଅର୍ଦ୍ଧ ତୋଳା, ଏହା ସ୍ତ୍ରୀମାନଙ୍କର ସମସ୍ତ ପ୍ରକାର ପ୍ରଦରରୋଗ ଓ ଋତୁକାଳୀନ ବେଦନା ସକଳ ଦୂର କରେ ଏବଂ ବଳ ଓ ବର୍ଣ୍ଣ ବୃଦ୍ଧିକରେ ।

## ଅଶୋକାରିଷ୍ଟ-

ଅଶୋକ ଛାଲି ୧୨୲ ସେର, ଜଳ ୨୫୬ ସେର, ପାକାନ୍ତେ ଶେଷ ୬୪ ସେର, ଏହି କ୍ୱାଥ ଛାଣି ଗ୍ରହଣ କରିବ । ଏଥିରେ ଗୁଡ଼ ୨୫ ସେର ଗୋଳାଦେଇ ତହିଁରେ ଧାତୁକୀଫୁଲ ୧୬ ପଲ, କଳାଜୀରା, ମୁଥା, ଶୁଣ୍ଠୀ, ଦାରୁହଳଦୀ, ରଙ୍ଗ କଇଁମୂଳ, ହରିଡ଼ା, ଅଁଳା, ଆମ୍ବ କୋଇଲି, ଜୀରା, ବାସଙ୍ଗମୂଳ ଛାଲି, ରକ୍ତଚନ୍ଦନ, ଏ ସମସ୍ତର ଚୂର୍ଣ୍ଣ ପ୍ରତ୍ୟେକ ୧ ପଲ, ସମସ୍ତ କୁଟି ସେଥିରେ ମିଶାଇବ । ହାଣ୍ଡିର ମୁଖ ରୁନ୍ଧକରି ୧ ମାସ ରଖିବ । ପରେ ଛାଣି ଅରିଷ୍ଟ ଗ୍ରହଣ କରି ମାତ୍ରା—ଅର୍ଦ୍ଧପଲ, ଏହାର ସେବନରେ ରକ୍ତ ପିତ୍ତ ରକ୍ତାର୍ଶଃ ପ୍ରଭୃତି ରୋଗ ଏବଂ ସ୍ତ୍ରୀମାନଙ୍କର ସମସ୍ତ ପ୍ରକାର ପ୍ରଦର ଓ ଋତୁକାଳୀନ ବେଦନା ଦୂର ହୁଏ ।

## ଅଶ୍ୱଗନ୍ଧାଘୃତ-

ଘୃତ ୪ ସେର, କ୍ୱାଥାର୍ଥ—ଅଶ୍ୱଗନ୍ଧା ୧୨½ ସେର, ଜଳ ୬୪ ସେର, ପାକାନ୍ତେ ଶେଷ ୧୬ ସେର, ଛାଗମାଂସ ୧୫ ସେର, ଜଳ ୧୨୮ ସେର, ପାକାନ୍ତେ ଶେଷ ୩୨ ସେର, ଦୁଗ୍ଧ ୧୬ ସେର, କଲ୍କାର୍ଥ – କାକୋଲୀ, କ୍ଷୀରକାକୋଲୀ, ଋଦ୍ଧି, ବୃଦ୍ଧି, ମେଦ, ମହାମେଦ, ଜୀବକ, ଋଷଭକ, ବାଇଡ଼ଙ୍କମଞ୍ଜୀ, ଅଳାଇଚ, ଯଷ୍ଟିମଧୁ, ଦ୍ରାକ୍ଷା, ମୁଦ୍ଗପର୍ଣ୍ଣୀ, ମାଷପର୍ଣ୍ଣୀ, ଜୀବନ୍ତି, ପିପ୍ପଳୀ, ବାଡ଼ଅଁଳା, ଶତାବରୀ, ଭୂଇଁକଖାରୁ ଏ ସମସ୍ତ ମିଳିତ ୧ ସେର, ପାକ ଶେଷ ହେବାକୁ କିଛି କ୍ଷଣ ଥିବା କଲ୍କ ଛାଣି ଦେଇ ପୁଣି ପାକକରି ପୂର୍ଣ୍ଣ ପାକ କରିବ । ଶୀତଳ ହେଲେ ଶର୍କରା ଅଧସେର ଓ ମଧୁ ଅଧସେର ମିଶାଇବ । ମାତ୍ରା—ଅର୍ଦ୍ଧ ତୋଳା ଅନୁପାନ- ଉଷ୍ଣ ଦୁଗ୍ଧ । ଏହା ସ୍ତ୍ରୀମାନଙ୍କର ଜରାୟୁ ଦୋଷ ନିବାରକ, ସନ୍ତାନୋତ୍ପାଦକ ଏବଂ କ୍ଷୟ ନିବାରକ, ରତି ଶକ୍ତି ବର୍ଦ୍ଧକ, ନାନା ପ୍ରକାର ବାତ ବ୍ୟାଧିର ପ୍ରତିକାରକ, ଧାତୁଦୌର୍ବଲ୍ୟ ଓ ପୁରୁଷତ୍ୱ ହୀନତା ଅବସ୍ଥାରେ ଏହା ସେବନ କଲେ ବଳ, ବୀର୍ଯ୍ୟ, ମେଧା ସ୍ମୃତି ଇତ୍ୟାଦି ବୃଦ୍ଧିକରି କ୍ଷୀଣ ଶୁକ୍ରକୁ ପୂର୍ଣ୍ଣ କରେ । ପରୀକ୍ଷିତ

## ଅଶ୍ୱଗନ୍ଧା ରସାୟନ-

ଏହି ଅମର ବାଞ୍ଛିତ ରସାୟନ ପ୍ରତ୍ୟେକ ଗୃହସ୍ଥର ନିତ୍ୟ ପ୍ରୟୋଜନୀୟ ଔଷଧ । ଦୁରାରୋଗ୍ୟ କ୍ଷୟ, ଯକ୍ଷ୍ମା, କ୍ଷୟକାସ, ଶ୍ୱାସ, ଧ୍ୱଜଭଙ୍ଗ ଓ ନପୁଂସକତ୍ୱ ରୋଗର ଅବ୍ୟର୍ଥ ମହୌଷଧ । ଧାତୁଦୌର୍ବଲ୍ୟ ଇନ୍ଦ୍ରିୟ ଶୈଥିଲ୍ୟ, ପ୍ରମେହ, ସ୍ୱପ୍ନଦୋଷ, ଶୁକ୍ରତାରଲ୍ୟ ରୋଗରେ ଧନ୍ୱନ୍ତରୀ ପରି କାର୍ଯ୍ୟକରେ । ନିତ୍ୟ ସେବନରେ, କୋଷ୍ଠ ପରିଷ୍କାର ହୋଇ ସୁଖ ନିଦ୍ରା ହୁଏ । ମେଧା ଓ ସ୍ମୃତିଶକ୍ତି ବୃଦ୍ଧିପାଏ, ଏହା ଆମ୍ଭର ବହୁବାର ପରୀକ୍ଷିତ ।

## ଅଶ୍ୱଗନ୍ଧାରିଷ୍ଟ-

ଅଶ୍ୱଗନ୍ଧା ୬। ସେର, ଡାଳମୂଳୀ ୨୫ ସେର, ମଞ୍ଜିଷ୍ଠା, ହରଡ଼ା, ଦାରୁ ହଳଦୀ, ଯାଠିମହୁ, ରାସ୍ନା, ଭୂଇଁକଖାରୁ, ଅର୍ଜୁନଛାଲ, ମୁଥା, ତଣ୍ଟଡ଼, ପ୍ରତ୍ୟେକ ୨ ପଲ, ଶାଲୁବା ମୂଳ, ଶୁଆଁଲିର ମୂଳ, ଶ୍ୱେତ-ଚନ୍ଦନ, ରକ୍ତ ଚନ୍ଦନ, ବଚ, ଚିତ୍ରକ ମୂଳ ପ୍ରତ୍ୟେକ ୧ ସେର, ଜଳ୫୧୨ ସେର, ପାକାନ୍ତେ ଶେଷ ୬୪ ସେର, ଶୀତଳ ହେଲେ ଛାଣି ତହିଁରେ ଧାଇଫୁଲ ୨ ସେର, ମହୁ ୩୨୫ ସେର, ତ୍ରିକଟୁ ପ୍ରତ୍ୟେକ ୨ ପଲ, ଗୁଡ଼ତ୍ୱକ, ତେଜପତ୍ର, ଅଳାଇଚ, ପ୍ରତ୍ୟେକ ୪ ପଲ, ପ୍ରିୟଙ୍ଗୁ ୪ ପଲ ନାଗେଶ୍ୱର ୨ ପଲ ଏ ସମସ୍ତର ଚୂର୍ଣ୍ଣ ପ୍ରକ୍ଷେପ କରି ଆବୃତ ପାତ୍ରରେ ଏକମାସ ରଖିବ । ତା'ପରେ ଛାଣି ଗ୍ରହଣ କରିବ । ଏହି ଅରିଷ୍ଟ ସେବନ କଲେ, ସ୍ନାୟୁବିକ ଦୁର୍ବଳତା, ସମସ୍ତ ପ୍ରକାର ମାନସିକ ବେଦନା, ଶୁକ୍ର ଦୋଷ ଇତ୍ୟାଦି ନାଶକରି ବଳ ବୀର୍ଯ୍ୟ,କାନ୍ତି, ମେଧା,ସ୍ମୃତି ଇତ୍ୟାଦି ବୃଦ୍ଧି କରେ । ମୂତ୍ର ସହ ଚୂନ ଜଳ ପରି ପଦାର୍ଥ ଖସିଲେ ଏହାର ସେବନରେ ଶାନ୍ତ ହୁଏ । ଏହା ଧାତୁ ଦୌର୍ବଲ୍ୟର ଶ୍ରେଷ୍ଠ ଔଷଧ, ଶୁକ୍ରମେହ ଓ ବହୁମୂତ୍ରରେ ଏହା ଅତ୍ୟନ୍ତ ଉପକାରକ । ଅନୁଭୂତ.

## ଆନନ୍ଦ ଭୈରବ-

ହିଙ୍ଗୁଳ, ଠାଙ୍ଗଣା ଖଇ, ମହୁରା, ମରିଚ, ପିମ୍ପଳୀ, ପ୍ରତ୍ୟେକ ସମାନଭାଗ, ଜଳ ସହ ମର୍ଦ୍ଦନ କରି ୧ ରତି ପ୍ରମାଣେ ବଟିକା କରିବ । ଅନୁପାନ ପ୍ରଭେଦରେ ଏହା ଜ୍ୱର, କାସ, ଅଜୀର୍ଣ୍ଣ, ଆମାଶୟ ଇତ୍ୟାଦି ରୋଗରେ ବ୍ୟବହାର୍ଯ୍ୟ ଅଟେ ।

—୦(୦)୦—

## ଇଚ୍ଛାଭେଦୀ-

ଶୁଣ୍ଠୀ, ମରିଚ, ପାରା, ଗନ୍ଧକ, ଟାଙ୍ଗଣାଖଇ, ପ୍ରତ୍ୟେକ ୧ ଭାଗ। ଶୋଧିତ ଜୟପାଳ ୬ ଭାଗ, ଏସମସ୍ତ ଏକତ୍ର ଜଳରେ ବାଟି ୧ ରତି ପ୍ରମାଣେ ବଟିକା କରିବ । ଏଥିରୁ ଗୋଟିଏ ବଟିକା ଗିଳିଦେଇ ଶୀତଳ ଜଳ ଯୋଗେ ପିଇଲେ ଏକପ୍ରହର ମଧ୍ୟରେ ୬।୭ ବାର ଝାଡ଼ା ହେବ।

## ଉପଦଂଶ କୁଠାର-

ପାରଦ, ଗନ୍ଧକ, ମନଃଶିଳା, ସ୍ୱର୍ଣ୍ଣଭସ୍ମ, ରସକର୍ପୂର, କଳାଖଇର, ମତ୍ସ୍ୟପିତ୍ତ, ସମ୍ବଳକ୍ଷାର, ପିପ୍ପଳୀ ଏସମସ୍ତ ସମାନଭାଗରେ ଏକତ୍ର ତୁଳସୀପତ୍ର ରସରେ ମର୍ଦ୍ଦନ କରି ୧ ରତି ପ୍ରମାଣେ ବଟିକା କରିବ। ଏହା ଅନୁପାନ ବିଶେଷରେ ସମସ୍ତ ପ୍ରକାର ରକ୍ତଦୋଷ, କଣ୍ଡୁ, କାଛୁ, ଦାଦୁ, ଉପଦଂଶ, ଫିରଙ୍ଗିରୋଗ, ଅମ୍ଳପିତ୍ତ ଇତ୍ୟାଦି ରୋଗ ନାଶକରେ।

## ଏଳାଦି ଗୁଡ଼ିକା

ଅଳାଇଚ, ତେଜପତ୍ର, ଗୁଡ଼ତ୍ୱକ ପ୍ରତ୍ୟେକ ୩ ତୋଳା ପିପ୍ପଳୀ ୪ ତୋଳା ଚିନି, ଯଷ୍ଟିମଧୁ, ଖଜୁରୀ, ଦ୍ରାକ୍ଷା, ପ୍ରତ୍ୟେକ ୮ ତୋଳା, ଏସମସ୍ତ ଏକତ୍ର ଚୂର୍ଣ୍ଣ କରି ଆବଶ୍ୟକ ପରିମାଣରେ ମହୁ ମିଶାଇ ମର୍ଦ୍ଦନ କରି ଗୁଡ଼ିକା ଗଢ଼ିବ । ଏହା ରକ୍ତପିତ୍ତର ଗୋଟିଏ ଉତ୍ତମ ଔଷଧ । ଏଥିରେ ୩ ତୋଳା ବଂଶଲୋଚନା ମିଶାଇଲେ ଏହା କାଶ-ରୋଗରେ ଅତିବ ଉପକାର କରେ।



## କନକାସବ-

ଶାଖା, ମୂଳ, ପତ୍ର, ଫୁଲ ଓ ଫଳ ସହିତ କୁଟିତ ଦୁଦୁରା ୧୬ ପଳ, ବାସଙ୍ଗ ମୂଳର ଛାଲ ୪ ପଳ, ଯଷ୍ଠିମଧୁ, ପିପ୍ପଲୀ କଣ୍ଟକାରୀ, ନାଗେଶ୍ୱର, ଶୁଣ୍ଠୀ, ବୃହତ୍ୟାଙ୍ଗୀ, ତାଳୀଶପତ୍ର ପ୍ରତ୍ୟେକ ଚୂର୍ଣ୍ଣ ୨ ପଳ, ଧାତୁକୀଫୁଲ ୧୬ ପଳ, ଦ୍ରାକ୍ଷା ୨୦ ପଳ, ଜଳ ୧୨୮ ସେର, ଚେନି ୧୨୫ ସେର, ମଧୁ ୬। ସେର ଏସମସ୍ତ ଦ୍ରବ୍ୟ ଉତ୍ତମରୂପେ ମିଶାଇ ଅବୃତ ପାତ୍ରରେ ୧ ମାସ ରଖି ପରେ ଦ୍ରବାଂଶ ଛାଣି ଗ୍ରହଣ କରିବ । ଏହା ୨ ତୋଳା ମାତ୍ରାରେ ସେବନ କଲେ ପ୍ରବଳ ଶ୍ୱାସ, କାସ ଓ ରକ୍ତପିତ୍ତ ଅଶୁ ପ୍ରଶମିତ ହୁଏ ।

## କରଞ୍ଜାଦ୍ୟ ଘୃତ-

ଘୃତ ୪ ସେର, କ୍ୱାଥାର୍ଥ-କରଞ୍ଜଫଳ, ନିମ୍ବପତ୍ର, ଅର୍ଜୁନ, ଶାଳୁଅ, ଜାମ, ବଟ, ଡୁମ୍ବିର, ଅଶ୍ୱତ୍ଥ. ଜର ଏସମସ୍ତର ଛାଲ, ବେତକନ୍ଦା ସମସ୍ତ ମିଳିତ ୮ ସେର, ଜଳ ୬୪ ସେର, ପାକାନ୍ତେ ଶେଷ ୧୬ ସେର, କଲ୍କାର୍ଥ- ଉପରଲିଖିତ ପଦାର୍ଥ ସକଳ ମିଳିତ ୧ ସେର, ଏହି ଘୃତ ଯଥାବିଧି ପାକ କରି ପାନ କଲେ ଓ ଲଗାଇଲେ ଦାହ, ପାକ, ପୂୟସ୍ରାବ, ରକ୍ତିମା ଇତ୍ୟାଦି ଉପଦ୍ରବଯୁକ୍ତ ଉପଦଂଶ ଆରୋଗ୍ୟହୁଏ ।

## କର୍ପୂର ତିଳକ-

ପାରଦ ଭସ୍ମ, ଅଭ୍ରଭସ୍ମ, ବଙ୍ଗ ଭସ୍ମ, ତୀକ୍ଷ୍ଣଲୌହ ଭସ୍ମ, ସ୍ୱର୍ଣ୍ଣ ଭସ୍ମ, ରୌପ୍ୟ ଭସ୍ମ, ଶୋଧିତ ମନଶିଳା ପ୍ରତ୍ୟେକ ୧ ତୋଳା, ଶୋଧିତ ଗନ୍ଧକ ୪ ତୋଳା, ସ୍ୱର୍ଣ୍ଣମାକ୍ଷିକ ଭସ୍ମ ୪ ତୋଳ, ଏସକଳ ଏକତ୍ର ଭୃଙ୍ଗରାଜ ରସରେ ଓ ବ୍ରାହ୍ମୀ ରସରେ ଦିନେ ଲେଖେ ମର୍ଦ୍ଦନ କରି

କାଚ କୂପିରେ ରଖି ବାଲୁକାଯନ୍ତ୍ରରେ ଖରଅଗ୍ନି ତାପରେ ଏକଦିନ ପାକ କରିବ । ଶୀତଳ ହେଲେ ଔଷଧ ଗ୍ରହଣ କରି ତହିଁରେ ଲବଙ୍ଗ, ନାଗେଶ୍ୱର, ଗୁଡ଼ତ୍ୱକ, ଜାଇଫଳ, ଅଳାଇଚ, କର୍ପୂର, ଶୁଣ୍ଠୀ, ପିପ୍ପଳୀ, ମରିଚ, କସ୍ତୂରୀ, ମୁଥା, ତେଜପତ୍ର ଏସମସ୍ତ ପ୍ରତ୍ୟେକ ଅର୍ଦ୍ଧତୋଳା ପ୍ରମାଣେ ମିଶାଇ ଚୂର୍ଣ୍ଣ କରିବ । ମାତ୍ରା—୧ ମଷା, ଅନୁପାନ—ମଧୁ । ଏହା ସେବନରେ କୋଡ଼ିଏ ପ୍ରକାର ମେହ, ଯକ୍ଷ୍ମା, ସୋମରୋଗ, ମୂତ୍ରକୃଚ୍ଛ୍ର, ମୂତ୍ରାଘାତ, ଅଶ୍ମରୀ, ବାତ ଓ ପିତ୍ତବିକାର, କାମଳା, ବିଷମଜ୍ୱର, ଶୋଥ, ଅତିସାର, ଗୁଳ୍ମ, ପ୍ଲୀହା, ଉଦର ଇତ୍ୟାଦି ବିନାଶ ପ୍ରାପ୍ତ ହୁଏ ଓ ଆୟୁ, ବଳ, ବୀର୍ଯ୍ୟ ଇତ୍ୟାଦି ବର୍ଦ୍ଧି ବୃଦ୍ଧି ପାଏ ।

## କର୍ପୂର ରସ-

ହିଙ୍ଗୁଳ, ଅଫୁ, ମୁଥା, ଇନ୍ଦ୍ରଯବ, ଝାଙ୍ଗଣାଖଇ କର୍ପୂର ଏସମସ୍ତ ସମଭାଗରେ ଏକତ୍ର ମର୍ଦ୍ଦନ କରି ୨ ରତି ପ୍ରମାଣେ ବଟିକା କରିବ । ଏହା ତେଜନପାଣିସହ ସେବନ କଲେ ଝାଡ଼ା ବନ୍ଦହୁଏ ।

## କର୍ପୂରେଶ୍ୱର-

ହିଙ୍ଗୁଳ, ମୁଥା, ଇନ୍ଦ୍ରଯବ, ଯାଇଫଳ, ଶୋଧିତ ମହୁରୀ, ଝାଙ୍ଗଣା-ଫଳ, କର୍ପୂର ଫଟିକ, ମୋଚରସ ପ୍ରତ୍ୟେକ ୧ ଭାଗ, ଅଫୁ ୨ ଭାଗ ଏସମସ୍ତ ଏକତ୍ର ଷୀରବାକ୍ୱାଥ ସହ ମର୍ଦ୍ଦନ କରି ୨ ରତି ପ୍ରମାଣେ ବଟିକା କରିବ, ଏଥିରୁ ଗୋଟିଏ ବଟିକା ଗୁଡ଼ୂଲଧୂଆ ପାଣିସହ ବା ତକ୍ରା ସହ ସେବନ କଲେ ସମସ୍ତପ୍ରକାର ବିସୂଚୀ, ଅତିସାର, ପ୍ରବାହିକା ଇତ୍ୟାଦି ଶାନ୍ତ ହୁଏ ।

## କଲ୍ୟାଣସୁନ୍ଦର ରସ-

ରସସିନ୍ଦୂର, ଅଭ୍ର ଭସ୍ମ, ରୌପ୍ୟ ଭସ୍ମ, ତାମ୍ର ଭସ୍ମ, ସ୍ୱର୍ଣ୍ଣଭସ୍ମ, ହିଙ୍ଗୁଳ ଏସମସ୍ତ ସମଭାଗରେ ଏକତ୍ର, ଚିତ୍ରକ ରସରେ ୭ ଦିନ, ହାତଶୁଣ୍ଢ଼ୀ ରସରେ ୭ ଦିନ ଭାବନା ଦେଇ ୧ ରତି ପ୍ରମାଣେ ବଟିକା କରିବ । ଇଷଦୁଷ୍ଣ ଜଳସହ ଏହା ସେବନ କଲେ ହୃଦ୍ରୋଗ, ବକ୍ଷସ୍ଥଳ ପୀଡ଼ା, ବକ୍ଷୋରୁଧିର, ଫୁସ୍ ଫୁସ୍‌ଜ ସମସ୍ତରୋଗ ଅଶୁ ନିବାରିତ ହୁଏ ।

## କାଙ୍କାୟନଗୁଡ଼ିକା-

ଗଜଶୁଣ୍ଠୀ, ଗୁଡ଼, ଦନ୍ତିମୂଳ, ଚିତ୍ରକମୂଳ, ହରିଡ଼ା, ଶୁଣ୍ଠୀ, ବଚ, ଭଲ୍ଲାତକ-ମୂଳ, ପ୍ରତ୍ୟେକ ୮ ତୋଳା ହିଙ୍ଗୁ ୨୪ ତୋଳା, ଯବକ୍ଷାର ୧୬ ତୋଳା ଅମ୍ଳବେତସ ୧୬ ତୋଳା, ଯୁଆଣୀ, ଜୀରା, ମରିଚ, ଧନିଆ ପ୍ରତ୍ୟେକ ୨ ତୋଳା, କଳାଜୀରା, ଅଜମୋଦା, ପ୍ରତ୍ୟେକ ୪ ତୋଳା ଏସମସ୍ତ ଚୂର୍ଣ୍ଣ ଏକତ୍ର ଲେମ୍ବୁରସରେ ମର୍ଦ୍ଦନ କରି, ଅର୍ଦ୍ଧତୋଳା ପ୍ରମାଣେ ଗୁଡ଼ିକା ଗଢ଼ିବ । ଏହା ସ୍ତ୍ରୀମାନଙ୍କ ରକ୍ତଗୁଳ୍ମରେ ଓ ବାଧକ ରୋଗରେ ବିଶେଷ ଉପକାରୀ । ସ୍ତ୍ରୀମାନଙ୍କର ରଜୋରୋଧ ହେଲେ ଏହାର ସେବନରେ ପୁନଃ ରଜଃପ୍ରବର୍ତ୍ତିତ ହୁଏ । ଅନୁପାନ—ବାତଜ ଗୁଳ୍ମରେ କାଞ୍ଜିପାଣି, କଫଜ ଗୁଳ୍ମରେ ଅଦାରସ, ପିତ୍ତଜ ଗୁଳ୍ମରେ ଉଷ୍ଣ ଦୁଗ୍ଧ ବା ଧନିଆ ହରିଡ଼ା କ୍ୱାଥ । ରକ୍ତଗୁଳ୍ମରେ ଉଷ୍ଟ୍ରୀଦୁଗ୍ଧ ଓ ରଜୋରୋଧରେ ଗୁଡ଼ତ୍ୱକ ଓ ରେଣୁକାର କ୍ୱାଥ । ଏହା ପୁରୁଷମାନେ ସେବନ କଲେ ସେମାନଙ୍କର ଗୁଳ୍ମ ଓ ପ୍ଲୀହା ବିନଷ୍ଟ ହୁଏ ।

## କାମିନୀବିଦ୍ରାବଣ ରସ-

ଅକରକରା, ଶୁଣ୍ଠୀ, ଲବଙ୍ଗ, କୁଙ୍କୁମ, ପିପ୍ପଳୀ, ଜାଇଫଳ, ଜାଇ-ପତ୍ରୀ, ରକ୍ତଚନ୍ଦନ, ପ୍ରତ୍ୟେକ ୨ ତୋଳା, ହିଙ୍ଗୁଳ, ଗନ୍ଧକ ପ୍ରତ୍ୟେକ

ଅର୍ଦ୍ଧତୋଳା, ଅପୁ ୮ ତୋଳା, ଏସମସ୍ତ ଏକତ୍ର ଜଳ ସହ ମର୍ଦ୍ଦନ କରି ୨ ରତି ପ୍ରମାଣେ ବଟିକା କରିବ । ରାତ୍ର ଭୋଜନ ପରେ ଏଥିରୁ ଗୋଟିଏ ବଟିକା ଦୁଗ୍ଧ ଓ ଶାକର ସହ ସେବନ କରିବ । ଏହା ଅତିଶୟ ବୀର୍ଯ୍ୟସ୍ତମ୍ଭକ ଏବଂ କାମିନୀଗଣର ଆହ୍ଲାଦଜନକ ଅଟେ ।

## କାସକୁଠାର-

ହିଙ୍ଗୁଳ, ମରିଚ, ଗନ୍ଧକ, ତ୍ରିକଟୁ, ଟାଙ୍ଗଣା ଖଇ ଏସମସ୍ତ ଏକତ୍ର ଜଳସହ ମର୍ଦ୍ଦନ କରି ୨ ରତି ପ୍ରମାଣେ ବଟିକା କରିବ । ଅନୁପାନ—ଅଦାରସ, ଏହାର ସେବନରେ ସର୍ବପ୍ରକାର କାସ ଓ ଶିରୋରୋଗ ପ୍ରଶମିତ ହୁଏ ।

## କୁଟଜ ରସକ୍ରିୟା-

କେରୁଅଁ ଛାଲ ୧୨ ସେର, ଜଳ ୬୪ ସେର, ପାକାନ୍ତେ ଶେଷ ୧୬ ସେର, ଏହି କ୍ୱାଥ ଛାଣି ତାହା ସହିତ ୨ ସେର ଚେନା ଗୋଳି ପୁନର୍ବାର ପାକ କରି ଅତ୍ୟନ୍ତ ଗାଢ଼ ହେଲେ ତହିଁରେ ମୋଚରସ, ବରାହକାନ୍ତା, ପ୍ରିୟଙ୍ଗୁ ପ୍ରତ୍ୟେକ ଚୂର୍ଣ୍ଣ ୮ ତୋଳା, ଇନ୍ଦ୍ରଯବ ଚୂର୍ଣ୍ଣ ୨୪ ତୋଳା, ପ୍ରକ୍ଷେପ କରି ହାତରେ ଲାଗିବା ପରି ଗାଢ଼ ହେଲେ ଓହ୍ଲାଇବ । ଏହା ରକ୍ତ ସ୍ରାବ ନିବାରକ ଏବଂ ରକ୍ତାମାଶୟ, ରକ୍ତପିତ୍ତ, ଅର୍ଶ, ରକ୍ତପ୍ରଦର ଇତ୍ୟାଦି ରୋଗରେ ଉପକାରକ । ମାତ୍ରା—ଅର୍ଦ୍ଧତୋଳା ଅନୁପାନ—ଚାଉଳଧୁଆପାଣି, ଛାଗ ଦୁଗ୍ଧ, ପୋକଶୁଙ୍ଗା ରସ ବା ଜାମପତ୍ର ରସ ।



## କୁବ୍ଜପ୍ରସାରଣୀ ତୈଳ

ତିଳତୈଳ ୧୬ ସେର, କ୍ୱାଥାର୍ଥ—ପ୍ରସାରୁଣୀ ୧୨୫, ଜଳ ୬୪ ସେର, ପାକାନ୍ତେ ଶେଷ ୧୬ ସେର, ଦଧିସର ୧୬ ସେର, କାଞ୍ଜିପାଣି ୧୬ ସେର, ଗବ୍ୟଦୁଗ୍ଧ ୩୨ ସେର, କଳ୍କାର୍ଥ—ଚିତ୍ରକ ମୂଳ, ପିପ୍ପଳୀମୂଳ, ଯଷ୍ଟିମଧୁ, ସୈନ୍ଧବ, ବଚ, ସଲ୍ଲୁପ, ଦେବଦାରୁ, ରାସ୍ନା, ଗଜପିପ୍ପଳୀ, ପ୍ରସାରୁଣୀ ମୂଳ, ଜଟାମାଂସୀ, ଭଲ୍ଲାଥ; ପ୍ରତ୍ୟେକ ୨ ପଲ, ମୃଦୁଅଗ୍ନିରେ ଏହି ତୈଳପାକ କରି ପୀଡ଼ିତ ସ୍ଥାନରେ ମର୍ଦ୍ଦନ କଲେ କୁବ୍ଜତା, ପଙ୍ଗୁତ୍ୱ ଗୃଧ୍ରସୀ, ଗ୍ରନ୍ଥିବାତ, ଅର୍ଦ୍ଦିତ, ହନୁସ୍ତମ୍ଭ ଇତ୍ୟାଦି ବାତ ଓ ବାତଶ୍ଳୈଷ୍ମିକ ରୋଗ ସକଳ ପ୍ରଶମିତ ହୁଏ ।

## କୁଳତ୍ଥାଦ୍ୟଘୃତ

ଘୃତ ୪ ସେର, କ୍ୱାଥାର୍ଥ—ବରୁଣଛାଲ ୮ ସେର, ଜଳ ୬୪ ସେର ପାକାନ୍ତେ ଶେଷ ୧୬ ସେର, କଳ୍କଦ୍ରବ୍ୟ—କୋଳଥ, ସୈନ୍ଧବ, ବିଡ଼ଙ୍ଗ, ଚେନା, ଛଗଳପାଦୁକା, ଯବକ୍ଷାର, କଖାରୁମଞ୍ଜି, ଗୋଖରୁ ମଞ୍ଜି, କାକୁଡ଼ି ମଞ୍ଜି ପ୍ରତ୍ୟେକ ୧ ପଲ, ଯଥାବିଧି ପାକକରି, ଏହିଘୃତ ପାନ କଲେ ସର୍ବପ୍ରକାର ଦୁଃସାଧ୍ୟ ଅଶ୍ମରୀ, ମୂତ୍ରକୃଚ୍ଛ୍ର ଓ ମୂତ୍ରାଘାତ ନିବାରିତ ହୁଏ ।

## କୁଷ୍ମାଣ୍ଡାବଲେହ

ପୁରାତନ ସ୍ଥୂଳତର କୁଷ୍ମାଣ୍ଡର ବୀଜାଧାର ତ୍ୱକ୍ ଶିରା ପରିତ୍ୟାଗ କରି ତାହାର କେବଳ କୋର ୧୨୫ ସେରକୁ, ୨୫ ସେର ଜଳରେ ସିଦ୍ଧ କରି ଅର୍ଦ୍ଧାଂଶ ଅବଶିଷ୍ଟ ରଖି ଓହ୍ଲାଇବ, ଶୀତଳ ହେଲେ ଯତ୍ନ ପୂର୍ବକ ବସ୍ତ୍ରଦ୍ୱାରା ନିଷ୍ପୀଡ଼ନ କରି ସେହି ଜଳ ପୁନଃପାକ ସକାଶେ ରଖିବ ।

କୁଷ୍ମାଣ୍ଡ କୋର ଗୁଡ଼କ ଖପରେ ଅଳ୍ପ ଶୁଖାଇ ତାମ୍ର କନ୍ଥାଦରେ ୪ ସେର ଘୃତସହ ଭାଜିବ । ସେହି କଣାରୁ କୋରର ବର୍ଣ୍ଣ ମଧୁପର ହେଲେ ସେତେବେଳେ ପୂର୍ବରକ୍ଷିତ କଣାରୁ ନିଷ୍ପୀଡ଼ିତ ଜଳ ଏବଂ ଚିନି ୧୬ ସେର ସେଥିରେ ଦେଇ ଏକତ୍ର ଲେହ୍ୟବତ୍ ପାକ କରିବ । ପରେ ପାକ ସମାପ୍ତ ପ୍ରାୟ ହୋଇ ଆସିଲେ ତହିଁରେ ପିପ୍ପଳୀ, ଶୁଣ୍ଠୀ, ଜୀର ପ୍ରତ୍ୟେକ ଚୂର୍ଣ୍ଣ ୬ ପଳ, ଧନିଆ, ତେଜପତ୍ର, ଅଳାଇଚ, ମରିଚ, ଗୁଡ଼ତ୍ୱକ ପ୍ରତ୍ୟେକ ଚୂର୍ଣ୍ଣ ୪ ତୋଳା ପରିମାଣରେ ନିକ୍ଷେପ କରି ପାକଶେଷ କରିବ । ଶୀତଳହେଲେ ୬ ସେର ମଧୁ ମିଶାଇବ । ମାତ୍ରା—୧ ତୋଳା ଠାରୁ ୬ ତୋଳା ପର୍ଯ୍ୟନ୍ତ । ଏହାର ସେବନରେ ରକ୍ତପିତ୍ତ, ପିତ୍ତଜ୍ୱର ପିପାସା, ଦାହ, ପ୍ରଦର, କୃଶତା, ବମନ, ଶ୍ୱାସ, କାସ, ହୃଦ୍ରୋଗ ସ୍ୱରଭେଦ, ଉରଃକ୍ଷତ, କ୍ଷୟ, ବୃଦ୍ଧି, ଅମ୍ଳପିତ୍ତ ଇତ୍ୟାଦି ବହୁରୋଗ ପ୍ରଶମିତ ହୁଏ ଏବଂ ବଳ, ବର୍ଣ୍ଣ ଓ ଆୟୁଃ ବୃଦ୍ଧିପାଏ

## କୃମିଘାତିନୀ ଗୁଡ଼ିକା-

ପାରଦ ୧ ତୋଳା, ଗନ୍ଧକ ୬ ତୋଳା, ଅଜୋମୋଦା ୩ ତୋଳା ବିଡ଼ଙ୍ଗ ୪ ତୋଳା ବ୍ରହ୍ମୟଷ୍ଠୀ ମଞ୍ଜି ୫ ତୋଳା, କେନ୍ଦୁମଞ୍ଜି ୬ ତୋଳା, ଏସମସ୍ତ ଏକତ୍ର ଚୂର୍ଣ୍ଣ କରି ମଧୁସହ ବାଟି ୧ ରତି ପ୍ରମାଣେ ବଟିକା କରିବ । ଏହାର ସେବନ ପରେ ତୃଷା ହେଲେ ମୁଥାର ବା ମୂଷାକାନିର କ୍ୱାଥ ଚିନିସହ ପାନକରିବ । ଏହାର ସେବନରେ ସମସ୍ତପ୍ରକାର କୃମି ଅତିଶୀଘ୍ର ବିନଷ୍ଟ ହୁଅନ୍ତି ।

## କୃମିମୁଦ୍ଗର ରସ

ପାରଦ ୧ ତୋଳା, ଟଙ୍କକ ୬ ତୋଳା, ଅଜମୋଦା ୩ ତୋଳା, ବିଡ଼ଙ୍ଗ ୪ ତୋଳା, ଶୋଧିତ କୋଚିଲା ୫ ତୋଳା, ପଳାଶମଞ୍ଜି ୬

ତୋଳା, ଏସମସ୍ତ ଏକତ୍ର ଚୂର୍ଣ୍ଣକରି ରଖିବ । ମାତ୍ରା— ୧ମଷାଠାରୁ ୪ ମଷା ପର୍ଯ୍ୟନ୍ତ, ଅନୁପାନ ମଧୁ । ଔଷଧ ସେବନପରେ ମୁଥାକ୍ୱାଥ ପାନ କରିବ । ଏହା ତିନି ଦିନ ସେବନ କଲେ ସମସ୍ତ ପ୍ରକାର ଅନ୍ତଃସ୍ଥ କୃମି ବିନଷ୍ଟ ହୁଅନ୍ତି ।

## କୋଶାତକୀ ତୈଳ-

ପିତା ଜହ୍ନି ମଞ୍ଜି, ପିତା ଲାଉମଞ୍ଜି, ଶୁଣ୍ଠି, ମିଳିତ ୧ ସେର, ଏହି କଳ୍କ ସହ ତୈଳ ୪ ସେର ଓ ଜଳ ୧୬ ସେର ଏକତ୍ର ପାକ କରିବ, ଏହିତୈଳ ଲଗାଇଲେ ଦୁଷ୍ଟ ନାଡ଼ୀବ୍ରଣ ଶୁଖିଯାଏ ।

## କ୍ରବ୍ୟାଦ ରସ-

ପାରଦ ୧ ପଲ, ଗନ୍ଧକ ୨ ପଲ, ତାମ୍ରଭସ୍ମ ୪ ତୋଳା, ଲୌହ ଭସ୍ମ ୪ ତୋଳା, ଏସମସ୍ତ ଚୂର୍ଣ୍ଣ କରି ଲୌହକଟାହରେ ମୃଦୁ ଅଗ୍ନିରେ ତରଳାଇ ଏରଣ୍ଡ ପତ୍ରରେ ଢ଼ାଳି ପର୍ପଟୀ ପରି କରିବ । ପରେ ଅପର ଲୌହପାତ୍ରରେ ଉକ୍ତପର୍ପଟୀକୁ ୧୦୦ ପଲ ଜମ୍ବୀର ରସ ସହ ଅଳ୍ପ ଅଳ୍ପ ଦେଇ ପାକ କରିବ । ରସ ନିଃଶେଷ ହେଲେ ଉକ୍ତାଇ ପଞ୍ଚକୋଲର କ୍ୱାଥ ୫୦ ପଲ ଓ ଅମ୍ଳବେତରସ କ୍ୱାଥ ୫୦ ପଲ ସହ ଯଥା କ୍ରମେ ସେହି ପର୍ପଟୀକି ଭାବନା ଦେବ । ପରେ ତାହାସହ ଟାଙ୍ଗଣାଖଇ ୪ ପଲ ବିଟଲବଣ ୨ ପଲ, ମରିଚ ଚୂର୍ଣ୍ଣ ୧୦ ପଲ, ମିଶାଇ ଚଣକାମ୍ଳରେ ୭ ବାର ଭାବନା ଦେବ । ୨ ରତି ପ୍ରମାଣେ ବଟିକା କରିବ । ଅନୁପାନ ତକ୍ର ଓ ସୈନ୍ଧବଲବଣ । ଏହାର ସେବନରେ ମାଂସ ପିଷ୍ଟକାଦି ଗୁରୁପାକ ଆହାର ସକଳ ଦୁଇ ପ୍ରହର ମଧ୍ୟରେ ଜୀର୍ଣ୍ଣ ହୋଇ ଯାଏ ଏବଂ ଗୁଲ୍ମ, ପ୍ଳୀହା, ଉଦର, ଶୂଳ, ଗ୍ରହଣୀ, ଅତିସାର ପ୍ରଭୃତି ନାନାରୋଗ ଶାନ୍ତହୁଏ ।

## ଝଣ୍ଡକାଦ୍ୟ ଲୌହ-

ଶତାବରୀ, ଗୁଳୁଚି, ବାସଙ୍ଗଛାଲ, ମୁଣ୍ଡିରଛାଲ, ତାଲମୂଳ, ବାଉଁଳା, ଖଇରକାଠ, ବୃହଦ୍‌ଯାଠିମୂଳ ଛାଲ, ହରଡ଼ା,ବାହାଡ଼ା, ଅଁଳା, ପୁଷ୍କରମୂଳ ଏସମସ୍ତ ପ୍ରତ୍ୟେକ ୫୦ ତୋଳା, ଜଳ ୬୪ ସେର, ପାକାନ୍ତେ ଶେଷ ୧୬ ସେର, ଏହି କ୍ୱାଥରେ ମନଃଶିଳା ବା ସ୍ୱର୍ଣ୍ଣମାକ୍ଷିକଦ୍ୱାରା ଭସ୍ମ କରାଯାଇଥିବା କାନ୍ତଲୌହ ଭସ୍ମ ୧୬ ତୋଳା, ଖଣ୍ଡ ୨ ସେର, ଘୃତ୨ ସେର, ଏ ସମସ୍ତ ଏକତ୍ର ତାମ୍ର ପାତ୍ରରେ ଗୁଡ଼ପାକ କରି ପାକ କରିବ । ପାକ ପ୍ରାୟ ଶେଷ ହୋଇ ଆସିଲେ ବଂଶଲୋଚନା, ଶିଳାଜତୁ, ଗୁଡ଼ତ୍ୱକ, କକଡ଼ାଶୃଙ୍ଗୀ, ବିଡ଼ଙ୍ଗ, ଶୁଣ୍ଠୀ, ପିପ୍ପଳୀ, ଜୀରା, ପ୍ରତ୍ୟେକର ଚୂର୍ଣ୍ଣ ୮ ତୋଳା, ହରିଡ଼ା, ବାହାଡ଼ା, ଅଁଳା, ତେଜପତ୍ର, ମରିଚ, ନାଗେଶ୍ୱର, ପ୍ରତ୍ୟେକର ଚୂର୍ଣ୍ଣ ୨ ତୋଳା, ନିକ୍ଷେପକରି ପାକଶେଷ କରି ଓହ୍ଲାଇବ । ଶୀତଳ ହେଲେ ୨ ସେର ମଧୁ ମିଶ୍ରିତ କରି ଘୃତାକ୍ତ ସ୍ନିଗ୍ଧ ଭାଣ୍ଡରେ ରଖିବ ! ମାତ୍ରା—୧ ଅଣାଠାରୁ ୨ ଅଣାପର୍ଯ୍ୟନ୍ତ, ଅନୁପାନ—ଛାଗଦୁଗ୍ଧ ବା ବାସଙ୍ଗପତ୍ର ରସ । ଏହା ରକ୍ତପିତ୍ତ ଓ ରାଜ ଯକ୍ଷ୍ମାର ଗୋଟିଏ ସର୍ବ ଶ୍ରେଷ୍ଠ ଔଷଧ

## ଝଣ୍ଡକୁଷ୍ମାଣ୍ଡାବଲେହ-

କଖାରୁରସ ୧୨୪ ସେର, ଗବ୍ୟଦୁଗ୍ଧ ୧୨୪ ସେର, ଅଁଳାଚୂର୍ଣ୍ଣ ୮ ପଲ, ଚିନି ୮ ପଲ, ଗବ୍ୟଘୃତ ୨ ପଲ, ଏସମସ୍ତ ପଦାର୍ଥ ଏକତ୍ର ମୃଦୁଅଗ୍ନିରେ ପାକକରିବ । ପିଣ୍ଡୀକୃତ ହେଲେ ଓହ୍ଲାଇବ । ଅଗ୍ନି ବଳ ବିବେଚନା କରି ପ୍ରତିଦିନ ୧ ପଲ ବା ଅର୍ଦ୍ଧପଲ କରି ସେବନ କରିବ । ଏହା ଅମ୍ଳପିତ୍ତ, ରକ୍ତପିତ୍ତ ଓ ରାଜ ଯକ୍ଷ୍ମାର ଶ୍ରେଷ୍ଠ ଔଷଧ ।

## ଗଦମୁରାରି-

ପାରଦ, ଗନ୍ଧକ, ମନଃଶିଳା, ଲୌହଭସ୍ମ, ଶୁଣ୍ଠୀ, ପିପ୍ପଳୀ, ମରିଚ, ତାମ୍ରଭସ୍ମ, ହିଙ୍ଗୁଳ, ସୀସାଭସ୍ମ, ଏସମସ୍ତ ଦ୍ରବ୍ୟ ଜଳରେ ମର୍ଦ୍ଦନ କରି ୨ ରତିପ୍ରମାଣେ ବଟିକା ପ୍ରସ୍ତୁତ କରିବ। ଏହା ଶୁଣ୍ଠୀକ୍ୱାଥ ସହ ସେବନ କଲେ ପ୍ରବଳ ଆମଜ୍ୱର ଓ ନବଜ୍ୱର ଶାନ୍ତହୁଏ।

## ଗନ୍ଧକ ରସାୟନ-

ଗୁଡ଼ୂଚୀ, ତେଜପତ୍ର, ଅଳାଇଚ, ନାଗେଶ୍ୱର, ଶୁଣ୍ଠୀ, ମରିଚ, କଳାଜୀରା, ତୋପଚିନି ପ୍ରତ୍ୟେକ ସମଭାଗ, ସର୍ବସମାନ ଶୋଧିତ ଅମରଶୀଳା ଗନ୍ଧକ, ସର୍ବଅମିଶ୍ରିର ସମାନ ଚିନି। ପ୍ରଥମରେ ଲୌହ-କଡ଼ାହିରେ ଗନ୍ଧକ ବୁଡ଼ିବା ପରିମାଣ ପିଅଳ ରସ ସହ ଗନ୍ଧକକୁ ମୃଦୁ ଅଗ୍ନିରେ ପାକ କରିବ। ରସ ଶେଷରେ ଗନ୍ଧକ ଉତ୍ତମ ତରଳଗଲେ ତହିଁରେ ଚିନି ଓ ଅନ୍ୟାନ୍ୟ ଜିନଷର ଚୂର୍ଣ୍ଣ ମିଶାଇ ଆଲୋଡ଼ନ କରି ଓହ୍ଲାଇବ। ଶୀତଳ ହେଲେ ତାହାକୁ ଖଳରେ ଉତ୍ତମରୂପେ ଚୂର୍ଣ୍ଣ କରି ବସ୍ତ୍ରଗାଳିତ କରି ରଖିବ। ମାତ୍ରା ୪ ଅଣା, ଅନୁପାନ-ଉଷ୍ଣଜଳ। ଏହା ସକଳ ପ୍ରକାର ଅମ୍ଳପିତ୍ତ, ଉପଦଂଶ, ବାତରକ୍ତ, ସମସ୍ତ ପ୍ରକାର ଚର୍ମରୋଗ ଇତ୍ୟାଦି ହରଣ କରି ଦେହରେ ନୂତନ ନିର୍ଦ୍ଦୋଷ ରକ୍ତ ଜାତ କରାଏ।

## ଗୁଡ଼ପିପ୍ପଳୀ-

ବଡ଼ଙ୍ଗ, ଶୁଣ୍ଠୀ, ପିପ୍ପଳୀ, ମରିଚ, କୁଡ଼, ହିଙ୍ଗୁ, ସୈନ୍ଧବ, ବିଟ ସାମୁଦ୍ର ଉଦ୍‌ଭିଦ ଓ ସଚଳଲବଣ, ଯବକ୍ଷାର, ସାଚକ୍ଷାର, ଟାଙ୍ଗଣାଖଇ, ସମୁଦ୍ର-ଫେନ, ଚିତ୍ରକ ମୂଳ, ଗଜପିପ୍ପଳୀ, କଳାଜୀରା, ତାଳଚୁଡ଼ାଭସ୍ମ, କଖାରୁ ଡ଼ଙ୍କ-ଭସ୍ମ, ଅପାମାର୍ଗ ଭସ୍ମ, ତେନ୍ତୁଳଚୋପା ଭସ୍ମ, ପ୍ରତ୍ୟେକ ସମଭାଗ, ସର୍ବ

ସମାନ ପିପ୍ପଳୀ ଚୂର୍ଣ୍ଣ, ସର୍ବ ସମଷ୍ଟିର ଦ୍ୱିଗୁଣ ପୁରୁଣାଗୁଡ଼, ଏ ସମସ୍ତ ଏକତ୍ର ମର୍ଦ୍ଦନ କରି ରଖିବ । ମାତ୍ରା—୨ ଅଣାଠାରୁ ୪ ଅଣା ପର୍ଯ୍ୟନ୍ତ; ଅନୁପାନ ଉଷ୍ଣଜଳ । ଏହା ପ୍ଲୀହା ଓ ଯକୃତର ଗୋଟିଏ ଶ୍ରେଷ୍ଠ ଔଷଧ ଏବଂ ଶିଶୁ ମାନଙ୍କ ପକ୍ଷେ ଏହା ବିଶେଷ ଉପକାରୀ ।

## ଗୁଡ଼ୁଚୀ ତୈଳ-

ତିଳତୈଳ ୪ ସେର, କ୍ୱାଥାର୍ଥ—ଗୁଳୁଚ ୧୨୪ ସେର ଜଳ ୬୪ ସେର, ପାକାନ୍ତେ ଶେଷ ୧୬ ସେର, କଳ୍କାର୍ଥ—ପେଷିତ ଗୁଳୁଚ ୧ ସେର, ଦୁଗ୍ଧ ୪ ସେର, ଏହି ତୈଳ ଯଥାବିଧି ପାକକରି ହାତ ଓ ଓ ପାଦରେ ମର୍ଦ୍ଦନ କଲେ ହାତ ପାଦର ଜ୍ୱାଳା ଶାନ୍ତହୁଏ । ନାଭିରେ ମର୍ଦ୍ଦନ କଲେ ମେହ ଦୋଷ ଦୂରହୁଏ । ମସ୍ତକରେ ମର୍ଦ୍ଦନ କଲେ ବାତ ପିତ୍ତ ଜନିତ ଶିରୋ ରୋଗ ପ୍ରଶମିତ ହୁଏ ଏବଂ ପୁରାତନ ଗ୍ରହଣୀ ରୋଗରେ ପେଟରେ ମାଲିସ୍ କଲେ ଉପକାର ହୁଏ ।

## ଗୁଳ୍ମକାଳାନଳରସ-

ଅଭ୍ରଭସ୍ମ, ଲୌହଭସ୍ମ, ପାରଦ, ଗନ୍ଧକ, ଟାଙ୍ଗଣାଖଇ, କଟୁକୀ, ବଚ, ଯବକ୍ଷାର, ସାଚକ୍ଷାର, ସୈନ୍ଧବ, କୁଡ଼, ତ୍ରିକଟୁ, ଦେବଦାରୁ ତେଜପତ୍ର, ଅଳାଇଚ, ଗୁଡ଼ତ୍ୱକ, ନାଗେଶ୍ୱର, ଖଇର ପ୍ରତ୍ୟେକର ଚୂର୍ଣ୍ଣ ସମଭାଗ, ଏ ସମସ୍ତ ଏକତ୍ର ଜମ୍ବୀର, ଚଣକ, ଦୁଦୁରା, କେଶରାଜ ଏମାନଙ୍କ ପତ୍ରର ରସରେ ଭାବନା ଦେଇ ୪ ରତି ପ୍ରମାଣେ ବଟିକା କରିବ । ଉଦର ମଧ୍ୟରେ ବା ତଳ ପେଟରେ ବର୍ତ୍ତୁଳାକାର ଗୁଳ୍ମ ଜନ୍ମିଲେ ବା ହେବାପରି ବୋଧହେଲେ ବା ଉଦର ଠେଲି ହୋଇ ଉପରକୁ ଉଠିଲେ ଏହି ଗୁଳ୍ମ କାଳାନଳ ପ୍ରୟୋଗ କରିବ । ଏହା ଅଗ୍ନେୟ ଓ ବାୟୁନାଶକ ।

ଅନୁପାନ—ତ୍ରିଫଳା ଜଳ ବା ପାନମଧୁରି ଓ ହରିଦ୍ରାକ୍ୱାଥ । ଏହାର ସେବନରେ ଯକୃତ ଓ ପ୍ଲୀହା ଅବଶ୍ୟ ଶାନ୍ତ ହୁଏ ।

## ଚନ୍ଦ୍ରାମୃତ -

ଶୁଣ୍ଠୀ, ପିପ୍ପଳୀ, ମରିଚ, ହରିଦ୍ରା, ବାହାଡ଼ା, ଅଳା, ଯଷ୍ଟିମଧୁ, ଧନିଆ, ଜୀରା, ସୈନ୍ଧବ ପ୍ରତ୍ୟେକ ୧ ତୋଳ, ପାରଦ, ଗନ୍ଧକ, ଲୌହଭସ୍ମ ପ୍ରତ୍ୟେକ ୨ ତୋଳ, ସୋହାଗା ଖଇ ୮ ତୋଳା, ମରିଚ ୪ ତୋଳା, ଏ ସମସ୍ତ ଏକତ୍ର ଛାଗ ଦୁଗ୍ଧରେ ପେଷଣ କରି ୫ ରତିପ୍ରମାଣେ ବଟିକା କରିବ । ଏହା କାସ, ଅଳ୍ପ ଜ୍ୱର ଯୁକ୍ତ କାସ ଶ୍ୱାସ, ଶିଶୁର ଆକ୍ଷେପ ଯୁକ୍ତ କାସ, ଯକ୍ଷ୍ମା କାସ ଇତ୍ୟାଦି ରୋଗରେ ପ୍ରଶସ୍ତ । ଏହା କଫକୁ ତରଳ କରି କାଢ଼ିଦିଏ । ପିପ୍ପଳୀଚୂର୍ଣ୍ଣ ମଧୁ ସହ ଅଥବା ଅଦାରସ ମଧୁ ସହ ୨ ବେଳା ୨ଟି ଚନ୍ଦ୍ରାମୃତ ବଟିକା ସେବନ କଲେ ସତ୍ୱର କାସ ବେଗ ଉପଶମିତ ହୁଏ । ଶ୍ୱାସ ଭାବଯୁକ୍ତ କାସ ରୋଗରେ ଓ ଶ୍ୱାସରୋଗୀର କାସ ରୋଗରେ ଏହାର ଅନୁପାନ ଅଦାରସ ଓ ମଧୁ । ଜ୍ୱରରେ କାସର ଉପସର୍ଗ ଥିଲେ ୨ । ୩ ଟି ଚନ୍ଦ୍ରାମୃତ ଓ ମୟୂର ପୁଚ୍ଛ ଭସ୍ମ ମଧୁ ସହ ଗୋଳ ରଖିବ । ରୋଗୀ କ୍ରମେ କ୍ରମେ ଏହା ଚାଟିବ । ଏହା ଅଜୀର୍ଣ୍ଣ, ଗ୍ରହଣୀରେ ମଧ୍ୟ ବିଶେଷ ଉପକାରୀ ।

## ଚିତ୍ରକାଦି ଗୁଡ଼ିକା-

ଚିତ୍ରକମୂଳ, ଶୁଣ୍ଠୀ, ବାସଙ୍ଗମୂଳ, ଗୁଳୁଚ, ଶାଳପର୍ଣ୍ଣୀ, ତାଳଜଟାଭସ୍ମ, ଅପାମାର୍ଗ ମୂଳ ଭସ୍ମ, ପୁରୁଣାମାଣ ମୂଳ ପ୍ରତ୍ୟେକ ଚୂର୍ଣ୍ଣ ୬ ତୋଳା, ଲୌହଭସ୍ମ, ଅଭ୍ରଭସ୍ମ, ପିପ୍ପଳୀଚୂର୍ଣ୍ଣ, ତାମ୍ରଭସ୍ମ, ଯବକ୍ଷାର, ପଞ୍ଚଲବଣ ପ୍ରତ୍ୟେକ ଚୂର୍ଣ୍ଣ ୨ ତୋଳା, ଗୋମୂତ୍ର ୧୬ ସେର ଏସମସ୍ତ ମୃଦୁ ଅଗ୍ନିରେ

ପାକ କରିବ । ଶୀତଳ ହେଲେ ଆବଶ୍ୟକ ପରିମାଣେ ମହୁ ମିଶାଇ ମର୍ଦ୍ଦନ କରି ୪ ମଷା ପ୍ରମାଣେ ଗୁଡ଼ିକା ପ୍ରସ୍ତୁତ କରିବ । ଏହା ଅନୁପାନ ପ୍ରଭେଦରେ ପ୍ଲୀହା, ଗୁଲ୍ମ, ଉଦର ଯକୃତ, ଗ୍ରହଣୀ, ଶୋଥ, ଅଗ୍ନିମାନ୍ଦ୍ୟ ଏବଂ ସ୍ତ୍ରୀମାନଙ୍କର ଋତୁ ରକ୍ତରୋଧ, ବାଧକ ଓ ସମସ୍ତ ପ୍ରକାର ଋତୁ-କାଳୀନ ପୀଡ଼ା ଶାନ୍ତ ହୁଏ ।

## ଚ୍ୟବନପ୍ରାଶ-

ବେଲଛାଲି, ଗନ୍ଧଣାଛାଲି, ପାମ୍ପୁଣାଛାଲି, ଗମ୍ଭାରିଛାଲି, ପାଟଳୀ-ଛାଲି, ବାଡ଼ିଅଁଳା, ଶାଳପର୍ଣ୍ଣୀ, କୃଷ୍ଣପର୍ଣ୍ଣୀ, ମାଷପର୍ଣ୍ଣୀ, ମୁଦ୍ଗପର୍ଣ୍ଣୀ, ପିପ୍ପଳୀ, ଗୋଖରା ବୀଜ, ଅକରାନ୍ତ, କକଡ଼ାଶୃଙ୍ଗୀ, ଭୂଇଁଅଁଳା, ଦ୍ରାକ୍ଷା, ଜୀବନ୍ତୀ, ପୁଷ୍କରମୂଳ (ଅଭାବେ କୁଡ଼), ଅଗୁରୁ, ହରିଡ଼ା, ଗୁଳୁଚି, ଋଦ୍ଧି, ଜୀବକ, ଋଷଭକ, ଗନ୍ଧଶୁଣ୍ଠି, ମୁଥା, ଶ୍ୱେତପୁରୁଣୀ, ମେଦ, ଛୋଟ ଅଳାଇଚ, ନୀଳୋତ୍ପଳ, ରକ୍ତଚନ୍ଦନ, ଭୁଇଁକଖାରୁ, ବାସଙ୍ଗମୂଳ, କାକୋଲୀ, କାକଜଂଘା ଏ ସମସ୍ତ ପ୍ରତ୍ୟେକ ୮ ତୋଳା, ବଡ଼ ୨ ଅଁଳା ୫୦୦ ଗୋଟି (ଅଁଳା ଗୁଡ଼ିକ କନା ଖଣ୍ଡିକରେ ହୁଗୁଳାରେ ବାନ୍ଧିଥିବା ବିଧି) ଜଳ ୬୪ ସେର ଏସମସ୍ତ କ୍ୱାଥ ନିୟମରେ ପାକ କରି ୧୬ ସେର ଜଳ ଅବଶିଷ୍ଟ ରଖି ଓହ୍ଲାଇବ । ପରେ ଅଁଳାଗୁଡ଼ିକ ଉଠାଇ ନେଇ ମଞ୍ଜୀ ଓ ଶିରା ବାହାର କରି ତିଳତୈଳ ଓ ଘୃତ ମିଳିତ ଦେଢ଼ ସେରରେ ଉତ୍ତମରୂପେ ଭାଜି ଶିଳରେ ଚିକ୍କଣ ପେଷଣ କରିବ । ତା ପରେ ଉକ୍ତ କ୍ୱାଥ ସହ ମିଶି ୬। ସେର ଓ ଉକ୍ତ ପେଷିତ ପୂର୍ବ ରକ୍ଷିତ ଅଁଳା ଏକତ୍ର ପାକ କରି ଲେହପରି ଗାଢ଼ ହେଲେ ବଂଶଲୋଚନା ଚୂର୍ଣ୍ଣ ୩୨ ତୋଳା (ଅଧସେର), ପିପ୍ପଳୀ-ଚୂର୍ଣ୍ଣ ୧୬ ତୋଳା, ଗୁଡ଼ତ୍ୱକ, ଅଳାଇଚ, ତେଜପତ୍ର, ନାଗେଶ୍ୱର ପ୍ରତ୍ୟେକ ଚୂର୍ଣ୍ଣ ୮ ତୋଳା, ସେଥିରେ ନିକ୍ଷେପ କରି ଧୀରେ ୨ ଚାଳି ଦେଇ ଘନ କର୍ଦ୍ଦମ ପରି ଅବସ୍ଥା ହେଲେ ଓହ୍ଲାଇବ । ଶୀତଳ ହେଲେ

ଉପଯୁକ୍ତ ପରିମାଣେ ମଧୁ ମିଶାଇ ସ୍ନିଗ୍ଧ ଭାଣ୍ଡରେ ରଖିବ । ଏହା ଶୁଷ୍କ କାସ, ବାୟୁ ଜନିତ ଶ୍ୱାସରୋଗ, ପୁରାତନ ରକ୍ତପିତ୍ତ, ବାତ ପିତ୍ତ ଜନିତ ତୃଷ୍ଣା ଇତ୍ୟାଦି ରୋଗରେ ବିଶେଷ ଉପକାରୀ । ଏହା ପୁଷ୍ଟିକାରକ, କୋଷ୍ଠାଶ୍ରିତ ବାୟୁ ନାଶକ, ମେହ ଦୋଷ ଓ ଅମ୍ଳପିତ୍ତ ଦୋଷ ନିବାରକ, ଜୀର୍ଣ୍ଣ ଶୂଳ ନାଶକ, ମସ୍ତିଷ୍କର ବଳକାରକ ହୃଦ୍‌ରୋଗ ଓ ଫୁସ୍‌ଫୁସ୍ ସମ୍ବନ୍ଧୀୟ ସମସ୍ତପ୍ରକାର ଦୁରବସ୍ଥାର ଉପଶମକାରୀ ଏବଂ ସାଧାରଣ ସ୍ୱାସ୍ଥ୍ୟର ଉନ୍ନତିକାରକ । ଏହା ଗୋଟିଏ ଶ୍ରେଷ୍ଠ ରସାୟନ ।

## ଛାଗଳାଦି ଘୃତ-

ଘୃତ ୧୬ ସେର, କ୍ୱାଥାର୍ଥ—ନପୁଂସକ ଛାଗ ମାଂସ ୧୨॥ ସେର, ଜଳ ୬୪ ସେର, ପାକାନ୍ତେ ଶେଷ ୧୬ ସେର, ଦଶମୂଳ ପ୍ରତ୍ୟେକ ୧୦ ପଳ, ଜଳ ୬୪ ସେର, ପାକାନ୍ତେ ଶେଷ ୧୬ ସେର, ବାଡ଼ିଅଳା ୧୨॥ ସେର, ଜଳ ୬୪ ସେର, ଶେଷ ୧୬ ସେର ଶତାବରୀ ରସ ୧୬ ସେର, ଦୁଗ୍ଧ ୧୬ ସେର, କଳ୍କାର୍ଥ—ଜୀବନ୍ତୀ, ଯଠିମଧୁ, କଚୁ, କାକୋଲୀ, କ୍ଷୀରକାକୋଲୀ, ନୀଳୋତ୍ପଳ, ମୁଥା, ରକ୍ତଚନ୍ଦନ, ରାସ୍ନା, ମୁଦ୍ଗପର୍ଣ୍ଣୀ, ମାଷପର୍ଣ୍ଣୀ, ପୃଶ୍ନିପର୍ଣ୍ଣୀ, ଶାଳପର୍ଣ୍ଣୀ, ଶ୍ୟାମାଲତା, ଶାରିବା, ମେଦ, ମହାମେଦ, କୁଡ଼, ଜୀବକ, ଋଷଭକ, ଗନ୍ଧଶୁଣ୍ଠୀ, ଦାରୁହଳଦୀ, ପ୍ରିୟଙ୍ଗୁ, ହରିଡ଼ା, ବାହାଡ଼ା, ଅଁଳା, ତଗରପାଦୁକା, ତାଲୀଶପତ୍ର, ପଦ୍ମକାଠ, ଅଲାଇଚ, ତେଜପତ୍ର, ଶତାବରୀ, ନାଗେଶ୍ୱର, ଜାଇଫଳ, ଧନିଆ, ମଞ୍ଜିଷ୍ଠା, ଡାଳିମ୍ବମଞ୍ଜି, ଦେବଦାରୁ, ରେଣୁକା, ବଡ଼ଅଲାଇଚ, ବଡ଼ଚାଂ, ଜୀରା, ପ୍ରତ୍ୟେକ ୪ ତୋଳା । ଏହି ଘୃତ ତାମ୍ରପାତ୍ରରେ ମୃଦୁଜାଳ ଦ୍ୱାରା ଯଥାବିଧି ପାକ କରିବ । ଶୀତଳ ହେଲେ ୨ ସେର ଶାକର ମିଶାଇ ରଖିବ । ଏହା ସମସ୍ତପ୍ରକାର ବାତ ବ୍ୟାଧିର ସ୍ୱୟମ୍ଭୂ ଶକ୍ତି ବିକୃତ ହୋଇ ଯେତେପ୍ରକାର ରୋଗ ଜନ୍ମେ ସେସମସ୍ତର ପ୍ରଧାନ ଔଷଧ । ହନୁସ୍ତମ୍ଭ ରଆ,

ଉନ୍ମାଦ, ମୃଗୀଅପସ୍ମାର, ପକ୍ଷାଘାତ, ଅର୍ଦ୍ଦିତ, ହୃଦ୍‌କମ୍ପ, ଶିରୋ ରୋଗ, ଯକ୍ଷ୍ମା, ଶରୀରର ଶୁଷ୍କତା, ଧାତୁଦୌର୍ବଲ୍ୟ ପ୍ରଭୃତି ନାନା ଉକ୍ତ ରୋଗ ଏହା ଦ୍ୱାରା ଉପଶମିତ ହୁଏ । ଏହା ବଲକାରକ, ବୀର୍ଯ୍ୟପୋଷକ ଓ ପୁଷ୍ଟିକର ଏବଂ ଶ୍ରେଷ୍ଠ ରସାୟନ ।

## ଜୟମଙ୍ଗଳ ରସ-

ପାରଦ, ଅଭ୍ରଭସ୍ମ, କାନ୍ତ ଲୌହଭସ୍ମ, ତୀକ୍ଷ୍ଣ ଲୌହଭସ୍ମ, ମୁଣ୍ଡ-ଲୌହଭସ୍ମ, ହରିତାଳ, ଗନ୍ଧକ, ସ୍ୱର୍ଣ୍ଣମାକ୍ଷିକଭସ୍ମ, ତ୍ରିକଟୁ, ମଣ୍ଡୁର, ସୁଙ୍ଗାଖଇ, ଚିତାମୂଳ ଏସମସ୍ତ ସମଭାଗରେ ଏକତ୍ର ଅକାନବିନ୍ଧ, ବେଗୁନିଆ, ବେଲ ଏମାନଙ୍କପତ୍ରର ରସରେ ପ୍ରତ୍ୟେକରେ ଦିନେଲେଖେ ଭାବନା ଦେଇ ଭୂଧର ଯନ୍ତ୍ରରେ ପାକ କରିବ । ମାତ୍ରା—୧ ମାଷା, ଅନୁପାନ ଦଶମୂଳକ୍ୱାଥ । ଏହାର ସେବନରେ ସମସ୍ତପ୍ରକାର ସାଧ୍ୟାସାଧ୍ୟ ଓ ସନ୍ନିପାତ ଜ୍ୱର ନିବାରିତ ହୁଏ ।

## ଜଳୋଦରାରି ରସ-

ପାରଦ ୨ ତୋଳା, ଗନ୍ଧକ ୪ ତୋଳା, ମନଃଶିଳା, ହଳଦୀ, କନକାମଞ୍ଜୀ, ତ୍ରିଫଳା, ତ୍ରିକଟୁ, ଚିତାମୂଳ, ପ୍ରତ୍ୟେକ ୧ ତୋଳା, ଏସମସ୍ତ ଏକତ୍ର ଦନ୍ତୀମୂଳ କ୍ୱାଥ, ସିଜୁକ୍ଷୀର ଓ ଭୃଙ୍ଗରାଜ ରସରେ ଭାବନାଦେଇ ବଟିକା କରିବ । ମାତ୍ରା—୨ ରତି ଠାରୁ ୪ ରତି ପର୍ଯ୍ୟନ୍ତ ଔଷଧ ସେବନ ପରେ ବିରେଚନ ହେଲେ ତକ୍ର ସଂଯୁକ୍ତ ଶୀତଳ ପଥ୍ୟ ଦେବ । ଏହାର ସେବନରେ ଜଳୋଦର ଶାନ୍ତହୁଏ ।

—०O०—

## ଜ୍ୱର ବାରଣ ରସ-

ହିଙ୍ଗୁଳ, ଶୋଧିତ ମହୁରା, ଟାଙ୍ଗଣାଖଇ, ଗନ୍ଧକ, ଅଭ୍ର, ଧୁତୁରାମଞ୍ଜି, ପିପ୍ପଳୀ, କଳାଜୀରା, ମସ୍ତ୍ରାମଞ୍ଜି ଏସମସ୍ତ ସମଭାଗରେ ଏକତ୍ର ବେଗୁନିଆ ପତ୍ର ରସରେ ଏକ ପ୍ରହର ମର୍ଦ୍ଦନକରି ୧ ରତି ପ୍ରମାଣ ବଟିକା କରିବ । ଜ୍ୱର ଆସିବା ପୂର୍ବରୁ ଏଥିରୁ ଗୋଟିଏ ମାତ୍ରା ଶୁଣ୍ଠି, ଜୀରା ଚୂର୍ଣ୍ଣ ଓ ଶର୍କରା ସହ ସେବନ କଲେ ଜ୍ୱର ଆଉ ଆସେନାହିଁ ।

## ଜ୍ୱରାଙ୍କୁଶ-

ପାରଦ, ଗନ୍ଧକ, ତାମ୍ରଭସ୍ମ, ହିଙ୍ଗୁଳ, ହରିତାଳ, ଲୌହଭସ୍ମ, ବଙ୍ଗଭସ୍ମ, ସ୍ୱର୍ଣ୍ଣମାକ୍ଷିକଭସ୍ମ, ଖର୍ପରଭସ୍ମ, ମନଃଶିଳା, ସ୍ୱର୍ଣ୍ଣଭସ୍ମ, ଅଭ୍ରଭସ୍ମ, ଗେରୁମାଟି, ଟାଙ୍ଗଣାଖଇ, ରୌପ୍ୟଭସ୍ମ, ଏସମସ୍ତ ସମଭାଗରେ ଏକତ୍ର ଲେମ୍ବୁ, ତୁଳସୀପତ୍ର, ଚିତ୍ରକମୂଳ, ଗଙ୍ଗାଇପତ୍ର, ଭେଜୁଲପତ୍ର ଏସମସ୍ତର ରସରେ ପ୍ରତ୍ୟେକରେ ଦିନେଲେଖେ ଭାବନାଦେଇ ଚଣକ ପ୍ରମାଣେ ବଟିକାକରି ଛାୟାଶୁଷ୍କ କରିବ । ଏହାର ସେବନରେ ସର୍ବପ୍ରକାର ଜ୍ୱର ଶୀଘ୍ର ଶାନ୍ତହୁଏ ଓ ଜଠରାଗ୍ନି ଦୀପ୍ତ ହୁଏ ।

## ଜ୍ୱରାଶନି-

ପାରଦ, ଗନ୍ଧକ, ସୈନ୍ଧବ, ଶୋଧିତ ମହୁରା, ତାମ୍ରଭସ୍ମ, ପ୍ରତ୍ୟେକ ସମଭାଗ ସର୍ବସମାନ ଲୌହଭସ୍ମ, ଲୌହଭସ୍ମ ସମାନ ଅଭ୍ରଭସ୍ମ ଏସମସ୍ତ ଏକତ୍ର ଲୌହ ଖଲ୍ଲରେ ଲୌହଦଣ୍ଡ ଦ୍ୱାରା ବେଗୁନିଆପତ୍ର ରସ ସହ ମର୍ଦ୍ଦନକରି ପୁନର୍ବାର ପାରଦ ସମାନ ମରିଚଚୂର୍ଣ୍ଣ ମିଶାଇ ଏବଂ ପୁନଃ ବେଗୁନିଆପତ୍ର ରସରେ ମର୍ଦ୍ଦନ କରି ୧ ରତି ପ୍ରମାଣେ ବଟିକା କରିବ । ଅନୁପାନ–ପାନ ରସ । ଏହାର ସେବନରେ ବିଷମଜ୍ୱର, ଧାତୁସ୍ଥଜ୍ୱର,

ପ୍ରବଳଦାହ, ତ୍ରିଦୋଷଜ୍ୱର ଏବଂ ଶ୍ୱାସ, କାସ, ପାଣ୍ଡୁ, ଶୋଥ ଇତ୍ୟାଦି ପ୍ରଶମିତ ହୁଏ ।

## ତାରକେଶ୍ୱର ରସ-

ରସସିନ୍ଦୂର, ଲୌହଭସ୍ମ, ବଙ୍ଗଭସ୍ମ, ଅଭ୍ରଭସ୍ମ, ଏସମସ୍ତ ସମଭାଗରେ ଏକତ୍ର ମହୁ ସହ ଘାଣ୍ଟି ୨ ଅଣା ଓଜନରେ ସେବନ କଲେ ମେହ, ବହୁମୂତ୍ର ଓ ଶ୍ୱେତପ୍ରଦର ଶାନ୍ତ ହୁଏ । ଶୁକ୍ର ମେହରେ ଏହା ନବନୀତ ଓ ମିଶ୍ରି ଅଥବା କଞ୍ଚା ଅଳାରସ ଓ ମହୁ ଅଥବା ଅଳାଚୂର୍ଣ୍ଣ ଓ ମହୁ । ମେହ ରୋଗରେ ଜ୍ୱାଳା ଥିଲେ ଏହା ହିମସାଗର ରସ ଓ ଶାକର ସହ ସେବନୀୟ । ବହୁମୂତ୍ରରେ ଏହା ଜାମ ରସ ଓ ମହୁ ସହ ସେବନ କରିବ ।

## ତାଳିଶାଦି ଚୂର୍ଣ୍ଣ-

ତାଳୀଶପତ୍ର, ଶୁଣ୍ଠୀ, ପିପ୍ପଳୀ, ମରିଚ, କକଡ଼ାଶୃଙ୍ଗୀ, ଛୋଟଅଳାଇଚ, ବାହାଡ଼ା, ବଂଶଲୋଚନା ଏସମସ୍ତ ସମଭାଗରେ ଏକତ୍ର ଚୂର୍ଣ୍ଣ କରିବ । ମାତ୍ରା—୨ ରତି ଠାରୁ ୮ ରତି ପର୍ଯ୍ୟନ୍ତ । ଏହା କାସ ଉଦ୍ବେଗ କାଳେ ସେବନ କଲେ କାସବାଧା ଦୂର ହୁଏ ।

## ତ୍ରିକଟୁକାଦିବର୍ତ୍ତି-

ତ୍ରିକଟୁ, ସୈନ୍ଧବ, ଶ୍ୱେତସୋରିଷ, ଅଳକ୍ତ, , କୁଡ଼, ଘସଘସା ଫଳ ମିଳିତ ୨ ତୋଳା, ମହୁ ୮ ତୋଳା, ଗୁଡ଼ ୨ ତୋଳା ଏସମସ୍ତ ପାକ କରି ବୃଦ୍ଧାଙ୍ଗୁଷ୍ଠ ପରିମିତ ବର୍ତ୍ତି ପ୍ରସ୍ତୁତ କରିବ । ଏହି ବର୍ତ୍ତିରେ ଘୃତ ଗୋଳି ଗୁହ୍ୟରେ ପ୍ରୟୋଗ କଲେ ଆନାହ, ଉଦାବର୍ତ୍ତ ଉଦର ଓ ଗୁଳ୍ମ ବିନଷ୍ଟ ହୁଏ ।

# ତ୍ରିଫଳାଦ୍ୟ ଘୃତ-

ଘୃତ ୪ ସେର, କ୍ୱାଥାର୍ଥ—ହରଡ଼ା, ବାହାଡ଼ା, ଅଁଳା ମିଳିତ ୨ ସେର, ଜଳ ୬୪ ସେର ପାକାନ୍ତେ ଶେଷ ୪ ସେର, ଭୃଙ୍ଗରାଜ ରସ ୪ ସେର, ବାସଙ୍ଗ ରସ ୪ ସେର, ଶତାବରୀ ରସ ୪ ସେର, ଛାଗ ଦୁଗ୍ଧ ୪ ସେର, ଗୁଳୁଚ ରସ ୪ ସେର, ଅଁଳା ରସ ୪ ସେର, କଳ୍କାର୍ଥ— ପିପ୍ପଳୀ. ଚେନ, ଦ୍ରାକ୍ଷା, ହରଡା ବାହାଡ଼ା, ଅଁଳା, ନୀଳୋତ୍ପଳ, ଯଠିମହୁ, କ୍ଷୀରକାକୋଲୀ, ଗମ୍ଭାରିଫଳ, ଭେଜ ମିଳିତ ୧ ସେର, ଏହି ଘୃତ ଯଥା- ବିଧି ପାକକରି ସେବନ କଲେ ଶିରୋ ରୋଗ, ଚକ୍ଷୁରୋଗ, ଦୃଷ୍ଟିଦୌର୍ବଲ୍ୟ, ସ୍ୱାସ୍ଥ୍ୟବଧତା, ଉନ୍ମାଦ, ସ୍ମୃତିଶକ୍ତି ଲୋପ ଇତ୍ୟାଦି ପ୍ରଶମିତ ହୁଏ । ମାତ୍ରା—୪ ଅଣା ଠାରୁ ୧ ତୋଳା ପର୍ଯ୍ୟନ୍ତ । ଅନୁପାନ ଈଷଦୁଷ୍ଣ ଦୁଗ୍ଧ ।

# ତ୍ରିବିକ୍ରମ ରସ-

ଶୋଧିତ ତାମ୍ରରେ ସମପରିମିତ ଛାଗୀ ଦୁଗ୍ଧ ମିଶାଇ ଏକତ୍ର ପାକ କରିବ । ଦୁଗ୍ଧ ଶେଷହେଲେ ତହିଁରେ ତାମ୍ର ସମାନ ଶୋଧିତ ପାରଦ ଓ ଗନ୍ଧକ ଏକତ୍ର କରି ବେଗୁନିଆ ରସରେ ଏକ ଦିନ ମର୍ଦ୍ଦନ କରି ବାଲୁକାଯନ୍ତ୍ରରେ ୧ ପ୍ରହର ପାକ କରିବ । ମାତ୍ରା—୨ ରତି । ଅନୁପାନ- ନିଭି ରସ । ଏହାର ସେବନରେ ଅଶ୍ମରୀ, ଶର୍କରା ଓ ମୂତ୍ରକୃଚ୍ଛ୍ର ପ୍ରଶମିତ ହୁଏ ।

# ତ୍ରୈଲୋକ୍ୟ ଚିନ୍ତାମଣି ରସ-

ପାରଦ, ହୀରକଭସ୍ମ, ସ୍ୱର୍ଣ୍ଣଭସ୍ମ, ରୌପ୍ୟଭସ୍ମ, ତାମ୍ରଭସ୍ମ, ଲୌହ- ଭସ୍ମ, ଅଭ୍ରଭସ୍ମ, ମୁକ୍ତାଭସ୍ମ, ଗନ୍ଧକ, ଶଙ୍ଖଭସ୍ମ, ପ୍ରବାଳଭସ୍ମ, ହରିତାଳ,

ମନଃଶିଳା, ପ୍ରତ୍ୟେକ ସମଭାଗ ଏକତ୍ର ଚିତ୍ରକମୂଳ ରସରେ ୭ ଦିନ ଏବଂ ଅର୍କକ୍ଷୀର, ବେଗୁନିଆପତ୍ର ରସ, ଓଲରସ ସିଜୁକ୍ଷୀର ଏ ପ୍ରତ୍ୟେକରେ ୩ ଦିନ ଲେଖେ ଭାବନାଦେଇ ତାହା ଯୀନ୍ତ ବର୍ତ୍ତି କଉଡ଼ି ଭିତରେ ରଖିବ । ଅନନ୍ତର ଅର୍କକ୍ଷୀର ସହ ଟାଙ୍ଗଣା ମର୍ଦ୍ଦନ କରି ତଦ୍ଵାରା କଉଡ଼ିର ମୁଖ ଲିପ୍ତ କରିବ । ପରେ ସେ କଉଡ଼ି ସକଳ ଭାଣ୍ଡ ମଧ୍ୟରେ ରଖି ଭାଣ୍ଡର ମୁଖ ରୁଦ୍ଧକରି ବାଲୁକାଯନ୍ତ୍ରରେ ପାକ କରିବ । ଶୀତଳ ହେଲେ ଚୂର୍ଣ୍ଣକରି ଏହା ସହ ଚୂର୍ଣ୍ଣ ତୁଲ୍ୟ ରସସିନ୍ଦୂର ଓ ରସସିନ୍ଦୂରର ଏକ ଚତୁର୍ଥାଂଶ ବୈକ୍ରାନ୍ତ ଭସ୍ମ ମିଶାଇ ସଞ୍ଚନାଛାଲ ରସରେ ୭ ଥର ଓ ଚିତ୍ରକମୂଳ ରସରେ ୭ ଥର ମର୍ଦ୍ଦନ କରି ବଟିକା କରିବ । ମାତ୍ରା—୧ ରତି ଠାରୁ ୪ ରତି ପର୍ଯ୍ୟନ୍ତ । ଏହାର ସେବନରେ ବିବିଧ ବାଳକ ପୀଡ଼ା, ବିବିଧ ଶୂଳ, ଉନ୍ମାଦ, ଗ୍ରହଣୀ, ରକ୍ତ ଅତିସାର, ମେହ ଇତ୍ୟାଦି ରୋଗ ପ୍ରଶାନ୍ତ ହୁଏ

## ତ୍ରୈଲୋକ୍ୟସୁନ୍ଦର ରସ-

ପାରଦ ୧ ଭାଗ ଅଭ୍ରଭସ୍ମ ୨ ଭାଗ, ଲୌହଭସ୍ମ ୮ ଭାଗ, ଗନ୍ଧକ, ତ୍ରିଫଳା, ତ୍ରିକଟୁ, ମୋଚରସ, ତାଳମୂଳୀ, ଗୁଳୁଚୀସାର ପ୍ରତ୍ୟେକ ୫ ଭାଗ ଏସମସ୍ତ ଏକତ୍ର ତ୍ରିଫଳା କ୍ୱାଥରେ ୧୦ ଦିନରେ ୨୦ ଥର ଭାବନାଦେଇ ପରେ ସଞ୍ଚନା ଓ ଚିତାମୂଳ ରସରେ ପୃଥକ୍ ପୃଥକ୍ ୮ ବାର ଲେଖେ ଭାବନାଦେଇ ୪ ମାଷା ପ୍ରମାଣେ ବଟିକା କରିବ । ଏହା ମହୁ ଓ ଶାକର ସହ ସେବନ କଲେ ଶୋଥ, ପାଣ୍ଡୁ, କାମଳା, କ୍ଷୟ, ଜ୍ୱରାତିସାର, ଗ୍ରହଣୀ ଇତ୍ୟାଦି ଶାନ୍ତହୁଏ ।

## ତ୍ର୍ୟାହିକାରି ରସ-

ପାରଦ, ଗନ୍ଧକ, ମନଃଶିଳା, ହରତାଳ, ପ୍ରତ୍ୟେକ ୧ ଭାଗ, ତୁତିଆ ୪ ଭାଗ, ଲୌହଭସ୍ମ ୬ ଭାଗ, ରୌପ୍ୟଭସ୍ମ ଅର୍ଦ୍ଧ ଭାଗ ଏସମସ୍ତ

ଏକତ୍ର ଜାମସ୍ଥଳ ରସରେ ଅପରାଜିତାପତ୍ର ରସରେ ପୃଥକ୍ ପୃଥକ୍ ମର୍ଦ୍ଦନ କରି ୩ ରତି ପ୍ରମାଣେ ବଟିକା କରିବ । ଅନୁପାନ—ମଧୁ ଓ ପଟୋଳ କ୍ୱାଥ । ଏହା ପାଳିଜ୍ୱର ଓ କମ୍ପଜ୍ୱରର ଶ୍ରେଷ୍ଠ ମହୌଷଧ ।

## ତ୍ର୍ୟୂଷଣାଦ୍ୟ ଘୃତ-

ଘୃତ ୪ ସେର, ଦୁଗ୍ଧ ୧୬ ସେର, କଲ୍କାର୍ଥ—ତ୍ରିକଟୁ, ତ୍ରିଫଳା, ଧନିଆ, ବିଡ଼ଙ୍ଗ, ଚଇଁଚିତା ମିଳିତ ୧ ସେର, ଏହି ଘୃତ ଯଥାବିଧି ପାକ କରି ପାନକଲେ ବାତଗୁଲ୍ମ ବିନଷ୍ଟ ହୁଏ ।

## ଦୁର୍ବାଦ୍ୟ ଘୃତ-

ଚାଉଳଧୂଆ ପାଣି ୧୬ ସେର, ଛାଗଦୁଗ୍ଧ ୧୬ ସେର, ଛାଗଘୃତ ୧୬ ସେର, କଲ୍କାର୍ଥ—ଦୂବ, କଇଁଫୁଲ କେଶର, ମଞ୍ଜିଷ୍ଠା, ବଡ଼ଅଲାଇଚ, ଚେନ୍ନ, ଶ୍ୱେତଚନ୍ଦନ, ଉଶୀରବେଣା, ମୁଥା, ରକ୍ତଚନ୍ଦନ, ପଦ୍ମକାଠ, ପ୍ରତ୍ୟେକ ଦୁଇ ତୋଳା, ଏହି ଘୃତ ଯଥାବିଧି ପାକ କରିବ । ରକ୍ତ-ବାମନରେ ଏହା ସେବନ କରିବ । ନାସିକାରୁ ରକ୍ତ ପଡ଼ିଲେ ଏହାର ନସ୍ୟ ଗ୍ରହଣ କରିବ । କର୍ଣ୍ଣରୁ ରକ୍ତ ସ୍ରାବ ହେଲେ ଏହାଦ୍ୱାରା କର୍ଣ୍ଣ ପୂରଣ କରିବ । ଚକ୍ଷୁରୁ ରକ୍ତ ସ୍ରାବ ହେଲେ ଏହାଦ୍ୱାରା ଚକ୍ଷୁ ପୂରଣ କରିବ । ମୂତ୍ର ଓ ଗୁହ୍ୟଦ୍ୱାରରୁ ରକ୍ତ ସ୍ରାବ ହେଲେ ପିଚକାରି ଦେବ । ଏବଂ ରୋମ ମୂଳରୁ ରକ୍ତ ସ୍ରାବ ହେଲେ ଏହା ଦେହରେ ମର୍ଦ୍ଦନ କରିବ ।

## ଦ୍ରାକ୍ଷାରିଷ୍ଟ-

ଦ୍ରାକ୍ଷା ୬। ସେର, ଜଳ ୧୨୮ ସେର, ପାକାନ୍ତେ ଶେଷ ୩୨ ସେର, କ୍ୱାଥ ଛାଣିକରି ତହିଁରେ ଗୁଡ଼ ୨୫ ସେର ଏବଂ ଗୁଡ଼ତ୍ୱକ,

ଅଳାଇଚ, ତେଜପତ୍ର, ନାଗେଶ୍ୱର, ପ୍ରିୟଙ୍ଗୁ, ମରିଚ, ପିପ୍ପଳୀ, ବିଡ଼ଙ୍ଗ, ପ୍ରତ୍ୟେକର ଚୂର୍ଣ୍ଣ ୮ ତୋଳା ଏସମସ୍ତ ଏକତ୍ର ମିଶାଇ ଘୃତ ସ୍ନିଗ୍ଧ ପାତ୍ରରେ ରଖି ମୁଖ ରୁଦ୍ଧକରି ତଦବସ୍ଥାରେ ଏକ ମାସ ରଖିବ । ମାସ ଶେଷରେ ଏହା ଯଥୋଚିତ ଗ୍ରହଣ କରିବ । ଏହାର ସେବନରେ ପିତ୍ତ-ଦୋଷ, ରକ୍ତଦୋଷ, ରକ୍ତପିତ୍ତ ଇତ୍ୟାଦି ଶାନ୍ତହୁଏ । କ୍ଷୁଧା ବୃଦ୍ଧି ହୁଏ । କୋଷ୍ଠ ପରିଷ୍କାର ହୁଏ । ଏବଂ ନାନାବିଧ ଚର୍ମରୋଗ, ହସ୍ତପଦ ଜ୍ୱାଳା ଓ ମୁଖ ନାକ ଦେଇ ରକ୍ତ ବାହାରିବା ଇତ୍ୟାଦି ଶାନ୍ତହୁଏ ।

## ଧାତ୍ରୀ ଘୃତ-

ଘୃତ ୪ ସେର, ଅଳାରସ ୪ ସେର, ଭୂଇଁକଖାରୁ ରସ ୪ ସେର, ଶତାବରୀ ରସ ୪ ସେର, ଦୁଗ୍ଧ ୪ ସେର, ତୃଣପଞ୍ଚମୂଳର କ୍ୱାଥ ୪ ସେର, କଳ୍କାର୍ଥ—ଅଳାଇଚ, ଲବଙ୍ଗ, ହରଡ଼ା, ବାହାଡ଼ା, ଅଳା, କଇଠ, କୁରୁବଳ୍ଲୀ, ସରଳକାଠ, ଜଟାମାଂସୀ, କଦଳୀମୂଳ, କଇଁଫୁଲ-କନା, ପ୍ରତ୍ୟେକ ୬ ତୋଳା, ପାକ ଶେଷରେ କଳ୍କ ଛାଣି ତହିଁରେ ଯଷ୍ଟିମଧୁ, ତନ୍ତୁଡ଼ମୂଳ, ଯବକ୍ଷାର, ମଣ୍ଡାମୂଳ ପ୍ରତ୍ୟେକର ଚୂର୍ଣ୍ଣ ୮ ତୋଳା ଏବଂ ଶାକର ୧ ସେର ପ୍ରକ୍ଷେପ କରିବ । ଶୀତଳ ହେଲେ ମଧୁ ୧ ସେର ମିଶାଇ ରଖିବ । ଏହା ପୁରାତନ ମେହ, ଶ୍ୱେତପ୍ରଦର, ପୁରାତନ-ଗନୋରିଆ, ବହୁମୂତ୍ର ପ୍ରଭୃତି ରୋଗରେ ବିଶେଷ ଉପକାରୀ । ଏହା ପୁଷ୍ଟିକର, ମେଧା ବର୍ଦ୍ଧକ ଓ ଶୁକ୍ରଜନକ । ମାତ୍ରା—ପାଉତୋଳା ଠାରୁ ୧ ତୋଳା ପର୍ଯ୍ୟନ୍ତ । ଅନୁପାନ—ଇଷଦୁଷ୍ଣ ଦୁଗ୍ଧ ।

## ଧାତ୍ରୀଲୌହ

ଈଷତ୍ କୁଟିତ ଯବଧାନ ତଣ୍ଡୁଳ ଅର୍ଦ୍ଧ ସେର, ଜଳ ୨ ସେର, ପାକାନ୍ତେ ଶେଷ ଅର୍ଦ୍ଧ ସେର, ଶତାବରୀ ରସ ୨ ସେର, ଅଳାରସ ୨

ସେର, ଦହି ଅଧ ସେର, ଦୁଗ୍ଧ ଅଧ ସେର, ଭୃଙ୍ଗରାଜ ରସ ଅଧ-ସେର, ଶତାବର ଅଧ ସେର, ଘୃତ ଅଧ ସେର, ଶୋଧିତ ସୂକ୍ଷ୍ମଚୂର୍ଣ୍ଣ କୃତମଣ୍ଡୁର ୪୮ ତୋଲା, ଏସମସ୍ତ ଏକତ୍ର ପାକ କରିବ । ଆସନ୍ନ ପାକ ସମୟରେ ଜୀର, ଧନିଆ, ଗୁଡ଼ତ୍ୱକ, ଅଳାଇଚ, ତେଜପତ୍ର, ଗଜପିପ୍ପଳୀ, ମୁଥା, ହରଡ଼ା, ଅଭ୍ରଭସ୍ମ, ଲୌହଭସ୍ମ, ଶୁଣ୍ଠୀ, ପିପ୍ପଳୀ, ମରିଚ, ରେଣୁକା, ବାହାଡ଼ା, ଅଁଳା, ତାଳୀଶପତ୍ର, ନାଗେଶ୍ୱର, କଟୁକୀ, ଯଠିମଧୁ, ରାସ୍ନା, ଅଶ୍ୱଗନ୍ଧା, ଶ୍ୱେତଚନ୍ଦନ ପ୍ରତ୍ୟେକ ଚୂର୍ଣ୍ଣ ୨ ତୋଲା ପରିମାଣେ ସେଥିରେ ପ୍ରକ୍ଷେପ କରି ପାକ ଶେଷ କରିବ । ଧାତ୍ରୀଲୌହ ଅନ୍ୟ ଏକ ପ୍ରକାର ଅଛି । ଦୁଇପ୍ରକାର ଅମ୍ଳପିତ୍ତ ଓ ଶୂଳ ରୋଗରେ ଉପକାରକ । ଭାବନା-ସିଦ୍ଧ ଧାତ୍ରୀଲୌହ ପିତ୍ତ ଶୂଳରେ ବିଶେଷ ଉପକାରୀ ଏବଂ ପାକସିଦ୍ଧ ଧାତ୍ରୀଲୌହ ବାୟୁଜନିତ ପରିଣାମ ଶୂଳର ଉପକାରକ । ଆହାରର ପ୍ରଥମରେ, ମଧ୍ୟରେ ଓ ଶେଷରେ ଔଷଧ ସେବନ କରି ଆହାର ଶେଷରେ ଦୁଗ୍ଧ ପାନ କରିବ । ଏହା ଶାସ୍ତ୍ରୀୟ ବ୍ୟବସ୍ଥା । କିନ୍ତୁ ଆଜିକାଲି ଏହି ଔଷଧ ପ୍ରାତଃକାଳେ ଦୁଗ୍ଧ ସହ ଅଥବା ଆହାରର କେବଳ ପ୍ରଥମ ଗ୍ରାସରେ ଅଥବା କେବଳ ଆହାରାନ୍ତେ ଜଳ ଦେଇ କ୍ରମା ଶାସ୍ତ୍ରୋକ୍ତ ବିଧି ଅନୁଯାୟୀ ଅବଶ୍ୟ ଅନୁସାରେ ବ୍ୟବହୃତ ହୋଇଥାଏ । ପରିପାକ ଶକ୍ତିର ଅଳ୍ପତା ହେତୁ ଅମ୍ଳଶୂଳ ଜାତହେଲେ ଏହି ଔଷଧ ଉପକାର ଦିଏନାହିଁ । ସେହିପରି ଅବସ୍ଥାରେ ହିଙ୍ଗୁ ସହିତ କୌଣସି ପାଚନ ଔଷଧ ସେବନୀୟ । ହିଙ୍ଗୁ ସହ ନ ଦେଲେ ଅଗ୍ନିଦୀପକ ପ୍ରଭୃତି ଔଷଧ ଦେବାକୁ ହେବ ।

## ଶିବାୟୁସ ଚୂର୍ଣ୍ଣ-

ତ୍ରିକଟୁ, ତ୍ରିଫଳା, ମୁଥା, ବିଡ଼ଙ୍ଗ, ଚିତାମୂଳ ପ୍ରତ୍ୟେକ ୧ ଭାଗ ଲୌହଭସ୍ମ ୯ ଭାଗ ଏସମସ୍ତ ଏକତ୍ର ମିଶାଇ ଚୂର୍ଣ୍ଣ କରିବ । ଘୃତ ଓ

କାମଲା ପ୍ରଭୃତି ରୋଗରେ ମଧୁ ଓ ଘୃତ ସହ ସେବନ କରିବ । ମାତ୍ରା— ପ୍ରଥମରେ ଏକ ରତି ମାତ୍ରାରେ ଔଷଧ ସେବନ ଆରମ୍ଭ କରି କ୍ରମେ ୨ ସପ୍ତାହରେ ୯ ରତି ପର୍ଯ୍ୟନ୍ତ ବୃଦ୍ଧି କରିବ ।

## ନାଗାର୍ଜ୍ଜୁନାଭ୍ର-

ସହସ୍ର ପୁଟ ଶୁଦ୍ଧ ବଜ୍ରାଭ୍ରଭସ୍ମ, ଅର୍ଜ୍ଜୁନଛାଲ କ୍ୱାଥରେ ୭ ଦିନ ଉତ୍ତମରୂପେ ମର୍ଦ୍ଦନ କରି ଛାୟାରେ ଶୁଷ୍କ କରି ବଟିକା କରିବ । ଏହା ସେବନ କଲେ ହୃଦ୍‌ରୋଗ, ଶୂଳ, ଅର୍ଶ, ଛର୍ଦ୍ଦି, ଅରୁଚି, ଅତିସାର, ଅଗ୍ନିମାନ୍ଦ୍ୟ, ରକ୍ତପିତ୍ତ ଓ ବିଷମଜ୍ୱର ଇତ୍ୟାଦି ଶାନ୍ତହୁଏ ।

## ନାରଦୀୟ ଲକ୍ଷ୍ମୀ ବିଳାସ-

ଅଭ୍ରଭସ୍ମ ୮ ତୋଲା, ପାରଦ, ଗନ୍ଧକ, କର୍ପୂର, ଜାଇପତ୍ରୀ ପ୍ରତ୍ୟେକ ୪ ତୋଲା, ମଣ୍ଡାମଞ୍ଜି, ଗଞ୍ଜାଇମଞ୍ଜି, ଭୃଙ୍ଗକଖାରୁ ଶତାବରୀ, ନାଗବଳାମୂଳ, ବାଡ଼ିଅଁଳାମୂଳ, ଦୁଦୁରାମଞ୍ଜି, ହେଞ୍ଜଳମଞ୍ଜି ପ୍ରତ୍ୟେକ ୨ ତୋଲା ଏସମସ୍ତ ଏକତ୍ର ପାନ ରସରେ ମର୍ଦ୍ଦନ କରି ୨ ରତି ପ୍ରମାଣେ ବଟିକା କରିବ । ଏହା ଶ୍ଳେଷ୍ମାଧିକ୍ୟ ଓ ବାତଶ୍ଳେଷ୍ମ ଘଟିତ ରୋଗ-ମାନଙ୍କରେ ବିଶେଷ ଉପକାରୀ । ଅନୁପାନ-ରୋଗ ଓ ବଳ ଅନୁସାରେ ବ୍ୟବସ୍ଥେୟ ।

## ନାରାଚ ଘୃତ-

ଘୃତ ୩୨ ତୋଲା, କଳ୍କାର୍ଥ—ସିଜୁକ୍ଷୀର, ଦନ୍ତୀମୂଳ, ତ୍ରିଫଳା, ବିଡ଼ଙ୍ଗ, ତେଜ ଅଙ୍କୋଟ୍, ଚିତାମୂଳ ପ୍ରତ୍ୟେକ ୧ ତୋଲା, ଏହି ଘୃତ ଯଥାବିଧି ପାକ କରି ରୋଗୀର ବଳ ଅନୁସାରେ ମାତ୍ରା ନିଶ୍ଚୟ କରି

ସେବନ କରିବ ଓ ଉଷ୍ଣଜଳ ଅନୁପାନ କରିବ । ବିରେଚନ ପରେ ପଞ୍ଚକୋଷ୍ଣ ପେୟ ପ୍ରସ୍ତୁତ କରି ପାନ କରିବ । ଏହା ସକଳ ପ୍ରକାର ଉଦର ରୋଗରେ ବିଶେଷ ଉପକାରୀ ।

## ନାରାଚ ରସ-

ପାରଦ, ଟାଙ୍ଗଣଖଇ, ମରିଚ ପ୍ରତ୍ୟେକ ୧ ତୋଲା ଗନ୍ଧକ, ପିପ୍ପଳୀ, ଶୁଣ୍ଠି ପ୍ରତ୍ୟେକ ୨ ତୋଲା, ନିସ୍ତୁଷ ଶୋଧିତ ଜୟପାଳ ବୀଜ, ୯ ତୋଲା, ଏସମସ୍ତ ଏକତ୍ର ଜଳ ମଧ୍ୟ ମର୍ଦ୍ଦନ କରି ୨ ରତି ପ୍ରମାଣେ ବଟିକା କରିବ । ଅନୁପାନ—ଚିଞ୍ଚୋଦକ । ଏହା ଗୁଳ୍ମ, ପ୍ଲୀହା, ଉଦର ରୋଗରେ ବିଶେଷ ଉପକାରୀ ।

## ନାରାୟଣ ତୈଳ-

ତିଳତୈଳ ୧୬ ସେର, କ୍ୱାଥାର୍ଥ—ବେଲ, ଗବଣା, ଫାମ୍ପଣା, ପାଁଟଳୀ, ଗମ୍ଭାରି, ପାଳଧୂଆ ଏମାନଙ୍କ ମୂଳର ଛାଲ ପସାରୁଣୀ, ଅଶ୍ୱଗନ୍ଧା, ବେଳ, ଅକରାନ୍ତ, ବାଡ଼ଅଁଳା, ନାଗବଳା, ଗୋଖରା, ପୁରୁଣୀ ପ୍ରତ୍ୟେକ ୧୦ ପଲ, ପାକାର୍ଥ ଜଳ ୨୫୬ ସେର, ପାକାନ୍ତେ ଶେଷ ୬୪ ସେର, କଲ୍କାର୍ଥ—ସଉପ, ଦେବଦାରୁ, ଜଟାମାଂସୀ, ଶୈଳଜ, ବଚ, ରକ୍ତଚନ୍ଦନ, ତଗରପାଦୁକା, କୁଡ଼, ଅଳାଇଚ, ଶାଳପର୍ଣ୍ଣୀ, ପୃଶ୍ନିପର୍ଣ୍ଣୀ, ମୁଦ୍ଗପର୍ଣ୍ଣୀ, ମାଷ-ପର୍ଣ୍ଣୀ, ରାସ୍ନା, ଅଶ୍ୱଗନ୍ଧା, ସୈନ୍ଧବ, ଶ୍ୱେତପୁରୁଣୀମୂଳ ପ୍ରତ୍ୟେକ ୨ ପଲ, ଶତାବରୀ ରସ ୧୬ ସେର, ଗବ୍ୟଦୁଗ୍ଧ ୬୪ ସେର, ଏହି ତୈଳ ଯଥା ବିଧାନେ ପାକ କରି ପାନ ଅଭ୍ୟଙ୍ଗ ଓ ବସ୍ତି କ୍ରିୟାରେ ପ୍ରୟୋଗ କରିବ । ଏହାଦ୍ୱାରା ପଙ୍ଗୁତା, ଅଧୋବାତ, ଶିରୋରୋଗ, ମନ୍ୟାସ୍ତମ୍ଭ ହନୁସ୍ତମ୍ଭ, ଦନ୍ତରୋଗ, ଗଳଗ୍ରହ, ଏକାଙ୍ଗଶୋଷ, ସକମ୍ପନଗତି, ଇନ୍ଦ୍ରିୟଦୌର୍ବଲ୍ୟ,

ଶୁକ୍ରହ୍ରାସ, ବଧିରତା, ଅଳ୍ପବୁଦ୍ଧି ପ୍ରଭୃତି ରୋଗ ଓ ସ୍ତ୍ରୀମାନଙ୍କର ଗର୍ଭ-ସ୍ରାବଣ ବ୍ୟାଘାତ ବଦୂରିତ ହୁଏ ।

## ନାରିକେଳ ଖଣ୍ଡ-

ସୁପକ୍ୱ ନାରିକେଳ ଶସକୁ ବାଟି ଚପୁଡ଼ି ଏହାର ଦ୍ୱୟାଂଶ ବାହାର କରିବ । ଏହି ପେଷିତ ନାରିକେଳ ଅଧସେର, ଘୃତ ୮ ତୋଳା ସହି ଭାଜି ଲାଲବର୍ଣ୍ଣ ହେଲେ ତହିଁରେ ଅଧସେର ଚିନି ଓ ୪ ସେର ନାରିକେଳ ଜଳ ମିଶାଇ ପାକ କରିବ । ପରିଶେଷରେ ଶୀତଳ ହେଲେ ଧନିଆ, ପିପ୍ପଳୀ, ମୁଥା, ବଂଶଲୋଚନା, ଜୀରା, କଳାଜୀରା ପ୍ରତ୍ୟେକ ଚୂର୍ଣ୍ଣ ଅର୍ଦ୍ଧତୋଳା ଏବଂ ଗୁଡ଼ତ୍ୱକ, ଅଳାଇଚ, ତେଜପତ୍ର, ନାଗେଶ୍ୱର ମିଳିତ ଚୂର୍ଣ୍ଣ ଅର୍ଦ୍ଧତୋଳା ଏସମସ୍ତ ଚୂର୍ଣ୍ଣ ତହିଁରେ ମିଶାଇ ଉତ୍ତମ ଭାବରେ ଆଲୋଡ଼ନ କରି ରଖିବ । ଏହା ବମନ ଯୁକ୍ତ ଅମ୍ଳପିତ୍ତ ଓ ପରିଣାମ-ଶୂଳରେ ଶ୍ରେଷ୍ଠ ଔଷଧ ; ମାତ୍ରା—୧ ଅଣା ଠାରୁ ୮ ଅଣା ପର୍ଯ୍ୟନ୍ତ । ଅନୁପାନ—ଈଷଦୁଷ୍ଣ ଦୁଗ୍ଧ ଅଥବା ଜଳ ।

## ନୃପବଲ୍ଲଭ-

ପାରଦ, ଗନ୍ଧକ, ଲୌହ, ଅଭ୍ର, ସୀଂସା, ଚିତାମୂଳ, ଡାହୁଡ଼ିମୂଳ, ନାଗଣାଖଇ, ଜାଇଫଳ, ହିଙ୍ଗୁ, ଗୁଡ଼ତ୍ୱକ, ଅଳାଇଚ, ମୁଥା, ଲବଙ୍ଗ, ତେଜପତ୍ର, କଳାଜୀରା, ଯୁଆଣୀ, ଶୁଣ୍ଠି, ସୈନ୍ଧବ, ମରିଚ, ରୌପ୍ୟଭସ୍ମ ପ୍ରତ୍ୟେକ ୧ ତୋଳା, ସ୍ୱର୍ଣ୍ଣଭସ୍ମ ୧୬ ରତି, ଏହି ସମସ୍ତ ଦ୍ରବ୍ୟ ଏକତ୍ର ଅଦାରସ ଓ ଅଁଳାରସରେ ଭାବନା ଦେଇ ୬ ରତି ପ୍ରମାଣରେ ବଟିକା କରିବ । ଏହା ପ୍ରାତଃକାଳେ ସେବନ କଲେ ଗ୍ରହଣୀ, ଅଜୀର୍ଣ୍ଣ, ଅଗ୍ନିମାନ୍ଦ୍ୟ ଓ ସର୍ବପ୍ରକାର ଉଦରପୀଡ଼ା ଶାନ୍ତ ହୁଏ ।

## ନୃପତିବଲ୍ଲଭ-

ଯାଇଫଳ, ଲବଙ୍ଗ, ମୁଥା, ଗୁଡ଼ତ୍ୱକ, ଅଳାଇଚ, ନାଗେଶ୍ୱର, ହିଙ୍ଗୁ, ଜୀର ତେଜପତ୍ର, ଯୁଆଣି, ଶୁଣ୍ଠି, ସୈନ୍ଧବ, ଲୌହଭସ୍ମ, ଅଭ୍ରଭସ୍ମ, ପାରଦ, ଗନ୍ଧକ, ତାମ୍ରଭସ୍ମ ପ୍ରତ୍ୟେକ ୧ ପଳ, ମରିଚ ୨ ପଳ ଏହି ଅଷ୍ଟାଦଶ ଦ୍ରବ୍ୟ ଛାଗଦୁଗ୍ଧରେ ବା ଅଁଳା ରସରେ ମର୍ଦ୍ଦନ କରି ଏକରତି ପ୍ରମାଣେ ବଟିକା ପ୍ରସ୍ତୁତ କରିବ । ଏହାର ସେବନରେ ଅଗ୍ନିମାନ୍ଦ୍ୟ, ଗ୍ରହଣୀ, ଶୂଳ, କାଶ, ଶ୍ୱାସ, ଶୋଥ ଭଗନ୍ଦର, ଉପଦଂଶ ଗୁଳ୍ମ, ପ୍ରଭୃତି ରୋଗଶାନ୍ତ ହୁଏ ଏବଂ ବଳ, ବୀର୍ଯ୍ୟ, କାନ୍ତି ଓ ସ୍ମୃତି ବୃଦ୍ଧିପାଏ ।

## ପଞ୍ଚତିକ୍ତଘୃତ-

ଘୃତ ୪ ସେର, କ୍ୱାଥାର୍ଥ – ନିମ୍ବଛାଲ, ପଟୋଳପତ୍ର, ଭେଙ୍କ, ଗୁଳୁଚି ବାସଙ୍ଗଛାଲ ପ୍ରତ୍ୟେକ ୮୦ ତୋଳା, ଜଳ ୬୪ ସେର ପାକାନ୍ତେ ଶେଷ ୧୬ ସେର, କଳ୍କାର୍ଥ—ତ୍ରିଫଳାମିଳିତ ୧ ସେର ଏହିଘୃତ ଯଥା ବିଧାନେ ପାକ କରି ଦୁଇଅଣାଠାରୁ ଅର୍ଦ୍ଧତୋଳା ପର୍ଯ୍ୟନ୍ତ ମାତ୍ରାରେ ଈଷଦୁଷ୍ଣଦୁଗ୍ଧ-ସହ ପାନ କଲେ ବାତରକ୍ତ, କୁଷ୍ଠ, ଗଣ୍ଡମାଳା, ଯକ୍ଷ୍ମରୋଗ, ରକ୍ତଦୋଷ, ଚର୍ମରୋଗ, ଜୀର୍ଣ୍ଣଜ୍ୱର, ଇତ୍ୟାଦି ଶାନ୍ତହୁଏ ।

## ପଞ୍ଚତିକ୍ତସାର-

ଏହାର ସେବନରେ ଶୀତକମ୍ପ ଛାଡ଼ିବା ପରେ ୨୪ ଘଣ୍ଟା ମଧ୍ୟରେ ସମସ୍ତ ପ୍ରକାର ଜ୍ୱର ଛାଡ଼ିଯାଏ । ମାଲେରିଆ, ଇନଫ୍ଲୁଏଞ୍ଜା, ପାଳିଜ୍ୱର, ଏକାହ୍ନିକ, ଦ୍ୱାହିକ, ତ୍ର୍ୟାହିତ, ଚାତୁର୍ଥିକ, କାଳାଜ୍ୱର ପ୍ରଭୃତି ଅଶେଷ ବିଧ ଜ୍ୱର ଏହାର ପ୍ରଭାବରେ ଛାଡ଼ି ଚାଲି ଯାଏ । ନବବଳ ନବ

ଠେକ ଫେର ଅସେ, ପଥ୍ୟାପଥ୍ୟ ଅବଶ୍ୟକ ନାହିଁ । ପ୍ରତ୍ୟେକ ଗୃହସ୍ଥର ଆପଦବିପଦର ଏହା ଏକମାତ୍ର ସହାୟ ।

## ପଞ୍ଚାନନ ରସ-

ଶୋଧିତ ମହୁରା ୨ ତୋଳା, ମରିଚ ୪ ତୋଳା, ଗନ୍ଧକ ୩ ତୋଳା ହିଙ୍ଗୁଳ ୧ ତୋଳା, ତାମ୍ରଭସ୍ମ ୨ ତୋଳା ଏସମସ୍ତ ଏକତ୍ର ଅର୍ଦ୍ଧମୂଳ-ରସରେ ମର୍ଦ୍ଦନ କରି ୧ ରତି ପ୍ରମାଣେ ବଟିକା କରିବ । ପ୍ରବଳ ଜ୍ୱର ସମୟରେ ଏହା ସେବନ କଲେ ଜ୍ୱରର ତାପ ଊଣା ହୁଏ । ଅନୁପାନ — ମଧୁ, ଅଦାରସ ବା କର୍ପୂର ଜଳ ।

## ପଞ୍ଚାମୃତ ରସ-

ପାରଦ ୧ ତୋଳା, ଗନ୍ଧକ ୧ ତୋଳା, ଟାଙ୍ଗଣଖଇ ୩ ତୋଳା, ଶୋଧିତ ମହୁରା ୩ ତୋଳା, ମରିଚ ୩ ତୋଳା ଏସମସ୍ତ ଏକତ୍ର ଜଳସହ ମର୍ଦ୍ଦନ କରି ୧ ରତି ପ୍ରମାଣେ ବଟିକା କରିବ । ଅନୁପାନ—ଅଦାରସ । ଏହାର ସେବନରେ ଶୋଥ, ଜଳୋଦର, ଜ୍ୱରାତିସାର ସଂଯୁକ୍ତ ଶୋଥ, ଗଳଗ୍ରହ ଓ ଶିରଃଶୂଳ ନିବାରିତ ହୁଏ ।

## ପବନାରି-

ଲବଙ୍ଗ ୪ ଭାଗ, ଶଙ୍ଖ ଅଭ୍ରମ, ଗୁଡ଼ତ୍ୱକ, ତେଜପତ୍ର, ଅଳାଇଚ, ନାଗେଶର, ରସସିନ୍ଦୂର ପ୍ରତ୍ୟେକ ୧ ଭାଗ, ଏସମସ୍ତ ଏକତ୍ର ପାନ ରସରେ ମର୍ଦ୍ଦନ କରି ଗୁଞ୍ଜ ପ୍ରମାଣେ ବଟିକା କରିବ । ଅନୁପାନ—ଗରମଜଳ ଓ ଚେଳ । ଏହା ଶୂଳରୋଗର ଅବ୍ୟର୍ଥ ମହୌଷଧ ।

## ପାଷାଣଭିନ୍ନରସ-

ପାରଦ ୧ ପଲ, ଗନ୍ଧକ ୨ ପଲ, ଶିଳାଜତୁ ୧ ପଲ ଏସମସ୍ତ ଏକତ୍ର ଯଥାକ୍ରମେ ଶ୍ୱେତପୁରୁଣୀ, ବାସଙ୍ଗ, ଶୁକ୍ଳଅପରାଜିତା ଏମାନଙ୍କ ରସରେ ପ୍ରତ୍ୟେକରେ ଦିନେଲେଖେ ଭାବନା ଦେଇ ଶୁଖାଇ ଭାଣ୍ଡ ମଧ୍ୟରେ ନିରୋଧ କରି ଦୋଳାଯନ୍ତ୍ରରେ ସ୍ୱେଦ ପ୍ରଦାନ କରିବ । ପରେ ଶୁଷ୍କ ଓ ଚୂର୍ଣ୍ଣ କରିବ । ଭୂଇଁଅଳାର ଫଳ ଓ ଗୋଠକାକୁଡ଼ ମୂଳ ଦୁଗ୍ଧ-ସହ ପେଷଣ କରି ଏହା ସହ ଔଷଧ ଚୂର୍ଣ୍ଣ ୨ ରତି ପ୍ରମାଣେ ସେବନ କରିବ । ଅଥବା କୋଳଥ କ୍ୱାଥ ଅନୁପାନରେ ସେବନ କରିବ । ଏହାର ସେବନରେ ଅଶ୍ମରୀ ଓ ଶର୍କରା ବିନଷ୍ଟ ହୁଏ ।

## ପିତ୍ତାନ୍ତକରସ-

ଜାଇଫଳ, ଗଙ୍ଗେଇ, ପିମ୍ପଳୀ, ଗୁଳୁଚୀ ମଞ୍ଜୀ, ଅପୁ ଏସକଳ ସମାଂଶରେ ଏକତ୍ର ଜଳସହ ମର୍ଦ୍ଦନ କରି ଏକରତି ପ୍ରମାଣେ ବଟିକା କରିବ । ଏଥିରୁ ୨ ଟି ମାତ୍ରା ମଧୁ ସହ ସେବନ କଲେ ପୈତ୍ତିକଜ୍ୱର ପ୍ରଶମିତହୁଏ । ଯେ କୌଣସି ଜ୍ୱର ପୂର୍ବରୁ ସେବନ କଲେ (ଦେହାଙ୍ଗରେ ପଡ଼ିଲେ ବା ଛଡ଼ିକରି ଆସୁଥିଲେ) ଜ୍ୱର ଆସିବା ପୂର୍ବରୁ ଏହା ସେବନ-କଲେ ଆଉ ଆସେ ନାହିଁ ।

## ପୀୟୂଷବଲ୍ଲୀରସ-

ପାରଦ, ଗନ୍ଧକ ଅଭ୍ର, ଲୌହ, ରୌପ୍ୟ, ଟାଙ୍ଗଣାଖଇ, ରସାଞ୍ଜନ, ସ୍ୱର୍ଣ୍ଣମାକ୍ଷି, ଲବଙ୍ଗ, ରକ୍ତଚନ୍ଦନ, ମୁଥା, ଅକାନବିନ୍ଧ, ଜୀରା, ଧନିଆ, ବରାହକ୍ରାନ୍ତା, କୁଭୁଣୀ, ଲୋଧ, କେରୁଆଁଛାଲି, ଇନ୍ଦ୍ରଯବ ଗୁଡ଼ାଛାଲି ଯାଇଫଳ, ଶୁଣ୍ଠୀ, ବେଲଶୁଣ୍ଠା, ଦୁର୍ବ୍ୱାମଞ୍ଜି ଡ଼ାଳିମ୍ବଚୋପା, ଧାଇଫୁଲ

କୁଡ଼ ପ୍ରତ୍ୟେକ ଅର୍ଦ୍ଧତୋଳା, ଏସମସ୍ତ ଏକତ୍ର କେଶରାଜରସରେ ଭାବନା ଦେଇ ଛାଗଦୁଗ୍ଧ ସହ ପେଷଣ କରି ଚଣାପରି ବଟିକା କରିବ । ପୋଡ଼ା ବେଲ ଓ ଗୁଡ଼ସହ ଅଥବା ମୁଥାରସ ଅନୁପାନରେ ଏହା ସେବନ କରିବ । ଏହା ରକ୍ତାତିସାର, ଗ୍ରହଣୀ, ରକ୍ତପ୍ରଦର ଇତ୍ୟାଦି ରୋଗର ଶ୍ରେଷ୍ଠ ମହୌଷଧ ।

## ପୁନର୍ନବାଦିମଣ୍ଡୂର-

ଶୋଧିତ ମଣ୍ଡୂର ୪୦ ତୋଳା, ପାକାର୍ଥ ଗୋମୂତ୍ର ୫ ସେର, ଆସନ୍ନପାକେ ପୁନର୍ନବା ତେୱୁଡ଼ି, ଶୁଣ୍ଠୀ, ପିପ୍ପଳୀ, ମରିଚ, ବିଡ଼ଙ୍ଗ, ଦେବଦାରୁ, ଚିତାମୂଳ, ହରଡ଼ା, ବାହାଡ଼ା ଅଳା, ହଳଦି, ଦାରୁହଳଦି ଦନ୍ତୀମୂଳ, ଗୁଳିକାଠ, ଇନ୍ଦ୍ରଜବ, କଟୁକୀ ପିପ୍ପଳାମୂଳ, ମୁଥା ପ୍ରତ୍ୟେକର ଚୂର୍ଣ୍ଣ ୧ ତୋଳା ପ୍ରମାଣେ ପ୍ରକ୍ଷେପ କରି ଓହ୍ଲାଇବ । ମାତ୍ରା—୧ ଅଣା-ଠାରୁ ୪ ଅଣା । ଅନୁପାନ—ଗରମଜଳ । ଏହାର ସେବନରେ ଯକ୍ଷ୍ମାଦି-ଦୋଷ, ଶୋଥ, ପାଣ୍ଡୁ କାମଳା ଇତ୍ୟାଦି ରୋଗ ଶାନ୍ତହୁଏ ।

## ପୁଷ୍କରାଦିଚୂର୍ଣ୍ଣ

କୁଡ଼, ଜରୁଷୀ, କକଡ଼ାଶୃଙ୍ଗୀ, ପିପ୍ପଳୀ, ଦୁରାଳଭା ଏସମସ୍ତ ସମାଂଶରେ ଏକତ୍ର ଚୂର୍ଣ୍ଣ କରି ଦୁଇଅଣା ମାତ୍ରାରେ ମହୁ ସହ ଚାଟିଲେ ସମସ୍ତ ପ୍ରକାର କାଶ ପ୍ରଶମିତ ହୁଏ ।

## ପୁଷ୍ପାଶୁଗରସ

ବଙ୍ଗାଭ୍ରଭସ୍ମ ୪ ତୋଳା, ରସସିନ୍ଦୂର, ୪ ତୋଳା, ଲବଙ୍ଗ କର୍ପୂର, ଜାଇଫଳ, ପିପ୍ପଳୀ ପ୍ରତ୍ୟେକ ୨ ତୋଳା, ସୁନ୍ନଅଳାଇଚ ୧ ତୋଳା

କସ୍ତୁରୀ ଏକମଷା ଏସମସ୍ତ ଏକତ୍ର ସାଚପାନ ରସରେ ମର୍ଦ୍ଦନ କରି ୨ ରତି ପ୍ରମାଣେ ବଟିକା କରିବ । ଏହା ସାଚପାନ ରସ ଓ ଲବଙ୍ଗ ଚୂର୍ଣ୍ଣ ଅନୁପାନ ସହ ସେବନ କରି ଗରିଷ୍ଠ ଆହାର ପଥ୍ୟ କଲେ ଧାତୁ-ଦୌର୍ବଲ୍ୟ, ମେହ, ଶୁକ୍ରକ୍ଷୀଣତା, ମୂତ୍ରକଦୌର୍ବଲ୍ୟ, ଅଗ୍ନିମାନ୍ଦ୍ୟ, ପିତ୍ତଦୋଷ ଅତିସାର ଗ୍ରହଣୀ ଇତ୍ୟାଦି ରୋଗ ଦୂରହୁଏ । ବଳବୀର୍ଯ୍ୟ କାନ୍ତି ସ୍ମୃତିଶକ୍ତି ବୃଦ୍ଧି ପାଏ ଏବଂ ମନୁଷ୍ୟ ଶତସ୍ତ୍ରୀ ସହବାସରେ ସମର୍ଥ ହୁଏ ।

## ପୁଷ୍ୟାନୁଗଚୂର୍ଣ୍ଣ

ଅକାନବନ୍ଧ, ଜାମ ମଞ୍ଜୀ, ଅମ୍ବକୋଇଲି, ପାଷାଣଭେଦୀ, ରସାଞ୍ଜନ, ଅମ୍ବଡ଼ା, ମୋଚରସ, ବରାହକ୍ରାନ୍ତା, ପଦ୍ମକେଶର, କୁଙ୍କୁମ, ଉତୁଷୀ, ମୁଥା, ବେଲଶୁଣ୍ଠା, ଲୋଧ, ଗେରୁମାଟି କାଫଡ଼, ମରଚ, ଶୁଣ୍ଠୀ, ଦ୍ରାକ୍ଷା, ରକ୍ତଚନ୍ଦନ, ଫାମ୍ପଣଛାଲି, ଇନ୍ଦ୍ରଯବ, ଶାରିବା, ଧାଇଫୁଲ, ଯଷ୍ଠିମଧୁ, ଅର୍ଜ୍ଜୁନ ଛାଲି, ପ୍ରତ୍ୟେକ ସମଭାଗ, ଏସମସ୍ତର ଚୂର୍ଣ୍ଣ ଏକତ୍ର ୨ ଅଣା ମାତ୍ରାରେ ଚାଉଳଧୁଆ ଜଳ ଓ ମହୁ, ଡ଼ାଳିମ୍ବପତ୍ର ରସ ଓ ମହୁ, ପୋକଶୁଙ୍ଘାପତ୍ର ରସ ଓ ମହୁ । ଏପରି ଯେ କୌଣସି ଅନୁପାନ ସହ ସେବନ କଲେ ସ୍ତ୍ରୀମାନଙ୍କର ରକ୍ତପ୍ରଦର, ଶ୍ୱେତପ୍ରଦର, ଯୋନିକ୍ଷତ ଯୋନିକ୍ଲେଦ ବେଦନାଯୁକ୍ତ ସ୍ରାବ ଏବଂ ସ୍ତ୍ରୀପୁରୁଷ ଉଭୟଙ୍କର ରକ୍ତାତିସାର ରକ୍ତପିତ୍ତ ରକ୍ତାର୍ଶ ପ୍ରଭୃତି ବହୁରୋଗ ପ୍ରଶମିତହୁଏ ।

## ପୂର୍ଣ୍ଣଚନ୍ଦ୍ରରସ

ପାରଦ ୪ ତୋଳା, ଗନ୍ଧକ ୪ ତୋଳା, ଲୌହଭସ୍ମ ୮ ତୋଳା, ଅଭ୍ରଭସ୍ମ ୮ ତୋଳା, ରୌପ୍ୟଭସ୍ମ ୨ ତୋଳା, ବଙ୍ଗଭସ୍ମ, ୪ ତୋଳା, ସ୍ୱର୍ଣ୍ଣ ଭସ୍ମ, ତାମ୍ରଭସ୍ମ, ପ୍ରତ୍ୟେକ ୧ ତୋଳା, ଜାଇଫଳ, ଲବଙ୍ଗ, ଅଳାଇଚ,

ଗୁଡ଼ତ୍ୱକ, ଜୀର୍, କର୍ପୂର, ପ୍ରିୟଙ୍ଗୁ, ମୁଥା ପ୍ରତ୍ୟେକ ୨ ତୋଳା ଏସମସ୍ତ ଏକତ୍ର ଘୃତକୁମାରୀ ରସରେ ତ୍ରିଫଳା କ୍ୱାଥରେ ଓ ଏରଣ୍ଡପତ୍ର ରସରେ ଭାବନା ଦେଇ ଏରଣ୍ଡପତ୍ର ଦ୍ୱାରା ବେଷ୍ଟନପୂର୍ବକ ତିନି ଦିନ ଧାନ ରାଶି ମଧ୍ୟରେ ପୋତିରଖିବ । ପରେ ବାହାର କରି ଚଣାପ୍ରମାଣେ ବଟିକା କରିବ ।ଏହାର ସେବନରେ କ୍ଷୟ, ବହୁମୂତ୍ର, ମେହ, ଯକ୍ଷ୍ମା ଇତ୍ୟାଦି କ୍ଷୟ କାରକ ସମସ୍ତ ଉପଦ୍ରବ ଶାନ୍ତହୁଏ । ଅନୁପାନ ତ୍ରିଫଳାକ୍ୱାଥ ବା ଅଳାରସ ।

## ପ୍ରଚଣ୍ଡଭାସ୍କର-

ପାରା ଅର୍ଦ୍ଧତୋଳା, ଗନ୍ଧକ, ବଙ୍ଗ ନାଗ, ତାମ୍ର ଭସ୍ମ ଲୌହ ଭସ୍ମ, ହରିତାଳ, ଅଭ୍ର ଭସ୍ମ ପ୍ରତ୍ୟେକ ଦେଢ଼ତୋଳା, ଗୋଲ ମରିଚ ୧୦ ତୋଳା, ଏସମସ୍ତ ଏକତ୍ର ଚିତ୍ରକ ମୂଳ କ୍ୱାଥରେ ୭ ଦିନ ମର୍ଦ୍ଦନ କରି ୧ ରତି ପ୍ରମାଣେ ବଟିକା କରିବ । ଅନୁପାନ ଗରମଜଳ ଓ ମଧୁ, ଏହା ପାଣ୍ଡୁ, ଅଗ୍ନିମାନ୍ଦ୍ୟ, ଶୋଥ ଓ ଉଦର ସମ୍ବନ୍ଧୀୟ ରୋଗରେ ବିଶେଷ ଉପକାରୀ । ଅନ୍ୟାନ୍ୟ ବହୁରୋଗରେ ଅନୁପାନ ପ୍ରଭେଦରେ ଏହା ପ୍ରୟୋଗ କରାଯାଏ । ଏହା ବାରମ୍ବାର ପରୀକ୍ଷିତ ।

## ପ୍ରଦରାରିଲୌହ ବା ପ୍ରଦରାନ୍ତକଲୌହ-

କେରୁଅଁ ଛାଲି ୧୬୪ ସେର, ପାକାର୍ଥ ଜଳ ୬୪ ସେର, ଶେଷ ୮ ସେର, ଏହି କ୍ୱାଥ ଛାଣି ପୁନର୍ବାର ପାକ କରିବ । ଗାଢ଼ହେଲେ ତହିଁରେ ବରାହକ୍ରାନ୍ତା, ମୋଚରସ, ଅକାନବିନ୍ଧ, ବେଲଶୁଣ୍ଠା, ମୁଥା, ଧାଇଫୁଲ, ଉତ୍ପଳୀ, ଅଭ୍ରଭସ୍ମ, ଲୌହଭସ୍ମ ପ୍ରତ୍ୟେକ ଚୂର୍ଣ୍ଣ ୧ ପଲ ଲେଖାଏ ପ୍ରକ୍ଷେପ କରି ଉତ୍ତମ ଆଲୋଡ଼ନ କରି ୧ ତୋଳା ପ୍ରମାଣେ ଗୁଡ଼ିକ କରିବ । କୁଶମୂଳ ବାଟି ଜଳରେ ଗୋଳି ତାହା ସହ ଏହି ଗୁଡ଼ିକ

ସେବନ କରିବ । ଏହାଦ୍ୱାରା ନାନାବିଧ ପ୍ରଦର କୁକ୍ଷିଶୂଳ, କଟିଶୂଳ, ଜରାୟୁ ଦୋଷ ଓ ସମସ୍ତ ପ୍ରକାର ବାଧକ ବେଦନା ଉପଶମିତ ହୁଏ ।

## ପ୍ରସାରୁଣୀ ତୈଳ-

ଏରଣ୍ଡ ତୈଳ ୪ ସେର, ପ୍ରସାରୁଣୀ ରସ ୧୬ ସେର, ଏହା ତୈଳପାକ ବିଧାନରେ ପାକ କରି ଯଥା ଯୋଗ୍ୟ ମାତ୍ରାରେ ସେବନ କଲେ ଏବଂ ପୀଡ଼ିତ ସ୍ଥାନରେ ମର୍ଦ୍ଦନ କଲେ ଆମବାତ ଓ ବାତଶ୍ଳୈଷ୍ମିକ ବିକାର ସମସ୍ତ ଶାନ୍ତ ହୁଏ ।

## ପ୍ରାଣଦାଗୁଡ଼ିକା-

ଶୁଣ୍ଠୀ ୨୪ ତୋଳା, ମରିଚ ୩୨ ତୋଳା, ପିପ୍ପଳୀ ୧୬ ତୋଳା, ଚଇଁକାଠ ୮ ତୋଳା, ତାଳିଶପତ୍ର ୮ ତୋଳା, ନାଗେଶ୍ୱର ୪ ତୋଳା ପିପ୍ପଳୀମୂଳ ୧୬ ତୋଳା, ତେଜପତ୍ର ୧ ତୋଳା, ଛୋଟ ଅଳାଇଚ ୨ ତୋଳା, ଗୁଡ଼ତ୍ୱକ ୧ ତୋଳା, ଉଶୀରବେଣା ୧ ତୋଳା, ଏସମସ୍ତ ର ଚୂର୍ଣ୍ଣ ପୁରୁଣା ଗୁଡ଼ ୩୦ ପଲ ସହ ମର୍ଦ୍ଦନ କରି ୨ ତୋଳା ପ୍ରମାଣେ ଗୁଡ଼ିକା କରିବ । ଭୋଜନର ଅବ୍ୟବହିତ ପୂର୍ବେ ଏହା ସେବନ କରିବ ଅନୁପାନ—ମଦ୍ୟ, ମାଂସରସ, ମାଂସଯୂଷ, ଦୁଗ୍ଧ ପ୍ରଭୃତି ଅଥବା ଅଭାବ ପକ୍ଷେ ଈଷଦୁଷ୍ଣ ଜଳ, କୋଷ୍ଠବଦ୍ଧ ଥିଲେ ଶୁଣ୍ଠୀ ପରିବର୍ତ୍ତେ ହରିତକୀ ବ୍ୟବହାର୍ଯ୍ୟ, ପିତ୍ତାର୍ଶେ ଗୁଡ଼ପରିବର୍ତ୍ତେ ଚୂର୍ଣ୍ଣ ସମଷ୍ଟିର ଚତୁର୍ଗୁଣ ଚିନି ଦେଇ ମୋଦକ ଗଢ଼ିବ । ଏହା ସେବନ କଲେ ସହଜ ଅର୍ଶ, ରକ୍ତାର୍ଶ ପ୍ରଭୃତି ସକଳ ପ୍ରକାର ଅର୍ଶ, ଗୁଳ୍ମ, ବିଷମଜ୍ୱର, ମନ୍ଦାଗ୍ନି, ପାଣ୍ଡୁ, କ୍ରିମି, ହୃଦ୍ରୋଗ, ଶୂଳ, ମୂତ୍ରକୃଚ୍ଛ୍ର, ଶ୍ୱାସ ଇତ୍ୟାଦି ରୋଗ ଦୂର ହୁଏ ।

## ପ୍ରାଣେଶ୍ୱର ରସ-

ପାରଦ, ଗନ୍ଧକ, ଅଭ୍ର, ଝାଙ୍ଗଣାଖଇ, ସଉ୍ରପ, ଯୁଆଣୀ, ଜୀର, ପ୍ରତ୍ୟେକ ୪ ତୋଳା, ଯବକ୍ଷାର, ହିଙ୍ଗୁ, ପଞ୍ଚଲବଣ, ବଡ଼ଙ୍ଗ, ଇନ୍ଦ୍ରଯବ ଚୂର୍ଣ୍ଣ, ଚିତାମୂଳ ପ୍ରତ୍ୟେକ ୬ ତୋଳା ଏସମସ୍ତ ଏକତ୍ର ଜଳରେ ମର୍ଦ୍ଦନ କରି ୬ ରତି ପ୍ରମାଣେ ବଟିକା କରିବ । ଏହା ଅନୁପାନ ପ୍ରଭେଦରେ ନାନା ରୋଗରେ ବିଶେଷତଃ ଆମାତିଶାରରେ ବିଶେଷ ଉପକାରୀ ।

## ପ୍ଲୀହାନ୍ତକ ରସ

ତାମ୍ର, ରୌପ୍ୟ, ଲୌହ, ଅଭ୍ର, ମୁକ୍ତା, ହିଙ୍ଗୁଳ, ରସାଞ୍ଜନ, ପାରଦ, ଗନ୍ଧକ, ଗୁଗ୍ଗୁଳୁ, ତ୍ରିକଟୁ, ବିଷ, କନକା, ତ୍ରିଫଳା, କଟୁକୀ ଦନ୍ତୀମୂଳ, ଜୟନ୍ତିମୂଳ, ସୈନ୍ଧବ, ଉଦୁମ୍ବର ମୂଳ, ଯବକ୍ଷାର ଏସମସ୍ତ ସମଭାଗରେ ଏକତ୍ର ଏରଣ୍ଡତୈଳ ସହ ମର୍ଦ୍ଦନ କରି ୧ ରତି ପ୍ରମାଣେ ବଟିକା କରିବ । ଏହାର ସେବନରେ ଅଷ୍ଟବିଧ ଉଦର, ପାଣ୍ଡୁ ଆନାହ, ବିଷମଜ୍ୱର, ଅଜୀର୍ଣ୍ଣ, ଆମଦୋଷ, କଫ ଦୋଷ କ୍ଷୟ, ସର୍ବପ୍ରକାର ଶୂଳ, କାଶ,ଶ୍ୱାସ, ଶୋଥ ଇତ୍ୟାଦି ରୋଗ ପ୍ରଶମିତ ହୁଏ । ଏହା ପ୍ଳିହା ଉଦର ରୋଗରେ ବିଶେଷ ଉପକାରୀ ।

## ଫଳକଲ୍ୟାଣ ଘୃତ

ଜୀବିତବତ୍ସା-ଗାଭିର ଦୁଗ୍ଧଜାତ ଘୃତ ୪ ସେର, ଶତାବରୀରସ ୧୬ ସେର, ଦୁଗ୍ଧ ୧୬ ସେର, କଲ୍କାର୍ଥ—ମଞ୍ଜିଷ୍ଠା, ଯଷ୍ଟିମଧୁ, କୁଡ଼, ତ୍ରିଫଳା, ଚେନ୍ନି, ବାଡ଼ିଅଁଲା ମେଦା ଭୂଇଁକଖାରୁ, କାକୋଲୀ, ଅଶ୍ୱଗନ୍ଧା, ଅଜମୋଦା, ହଳଦୀ, ଦାରୁହଳଦୀ, ହିଙ୍ଗୁ, କଟୁକୀ, ଉତ୍ପଳ, କୁମୁଦ ଦ୍ରାକ୍ଷା, କ୍ଷୀରକାକୋଲୀ, ଶ୍ୱେତଚନ୍ଦନ, ରକ୍ତଚନ୍ଦନ, ଲକ୍ଷ୍ମଣାମୂଳ,

ପ୍ରତ୍ୟେକ ୨ ତୋଳା ଏହି ଘୃତ ବନ୍ୟ ଘସିନିଅଁରେ ଯଥାବିଧି ପାକ କରି ସିଦ୍ଧ କରିବ । ଏହାର ସେବନରେ ପୁରୁଷର ବଳବୀର୍ଯ୍ୟାଦି ବୃଦ୍ଧି ପାଏ ବୀର୍ଯ୍ୟଦୋଷ ଦୂର ହୁଏ ଏବଂ ସ୍ତ୍ରୀମାନଙ୍କର ଯୋନି ଦୋଷ, ଗର୍ଭ ଦୋଷ, ମୃତବତ୍ସା ଦୋଷ,ବନ୍ଧ୍ୟା ଦୋଷ ନିରାକୃତ ହୋଇ ଆୟୁଃଶାଳୀ ବଳବାନ୍ ସୁପୁତ୍ର ପ୍ରସୂତ ହୁଏ । ଏହା ବନ୍ଧ୍ୟାରୋଗ, ମୃତବତ୍ସା ରୋଗ ଜରାୟୁ ବିକୃତ, ବାଧକ ବ୍ୟଥା ପଭୃତି ନାନାପ୍ରକାର ପୁତ୍ରୋତ୍ପାଦକ ବିଘ୍ନର ନିବାରକ ଅଟେ ।

## ଫଳବର୍ତ୍ତି-

ମଦନ ଫଳ,ପିପ୍ପଳୀ, କୁଡ଼, ବଚ ଯବକ୍ଷାର, ଶ୍ୱେତସର୍ଷପ, ପ୍ରତ୍ୟେକ ସମଭାଗ,ସର୍ବସମ ଗୁଡ଼,ଗୁଡ଼ରେ କିଛି ଜଳ ଦେଇ ଅଗ୍ନିରେ ପାକ କରିବ, ତାହା ସିଦ୍ଧ ହେଲେ ତହିଁରେ ଉପରୋକ୍ତ ସମସ୍ତର ଚୂର୍ଣ୍ଣ ପ୍ରକ୍ଷେପ କରି ବର୍ତ୍ତି ପ୍ରସ୍ତୁତ କରିବ । ଏହି ବର୍ତ୍ତି ଗୁହ୍ୟଦ୍ୱାରେ ପ୍ରବେଶ କରାଇଲେ ଉଦାବର୍ତ୍ତ ମଳବଦ୍ଧତା ଇତ୍ୟାଦି ଶାନ୍ତ ହୁଏ ।

## ବଚାଦିଚୂର୍ଣ୍ଣ-

ବଚ, ହରିଡ଼ା, ହିଙ୍ଗୁ, ସୈନ୍ଧବ, ଅମ୍ଳବେତସ, ଯବକ୍ଷାର, ଯୁଆଣୀ ଏସମସ୍ତ ସମ ଭାଗରେ ଏକତ୍ର ଚୂର୍ଣ୍ଣ କରି ପ୍ରାତଃକାଳେ ଅର୍ଦ୍ଧତୋଳା ମାତ୍ରାରେ ଉଷ୍ଣ ଜଳ ସହ ସେବନ କଲେ ଗୁଲ୍ମରୋଗ ସତ୍ୱର ପ୍ରଶମିତ ହୁଏ ଓ ଜଠରାଗ୍ନି ଦୀପ୍ତି ହୁଏ ।

## ବଜ୍ରକ୍ଷାର-

ସାମୁଦ୍ର ସୈନ୍ଧବ, କାଚ, ସଚଳ ଉଦ୍ଭିଦ ଏହି ପଞ୍ଚ ଲବଣ, ଯବ ଟାଙ୍ଗଣା, ସାଚ ଏହି ଉଭୟକ୍ଷାର ଏ ସମସ୍ତର ଚୂର୍ଣ୍ଣ ସମ ଭାଗରେ ଏକତ୍ର

ଖାଡ଼ସିଦ୍ଧ କ୍ଷୀର ଦ୍ୱାରା ୩ ଦିନ ଓ ଅର୍କ କ୍ଷୀରଦ୍ୱାରା ୩ ଦିନ ଭାବନା ଦେଇ ଖରାରେ ଶୁଖାଇବାପରେ ଏହାକୁ ଅର୍କପତ୍ର ଦ୍ୱାରା ବେଷ୍ଟନ କରି ଗୋଟିଏ ହାଣ୍ଡି ଭିତରେ ରଖି ଶରା ଦ୍ୱାରା ହାଣ୍ଡିର ମୁଖ ବନ୍ଦକରି ସନ୍ଧିସ୍ଥଳ ବଜ୍ର ଲେପଦ୍ୱାରା ରୁଦ୍ଧ କରିବ । ଏହି ହାଣ୍ଡି ଚୂଲି ଉପରେ ବସାଇ ନିମ୍ନରେ ଜାଳଦେବ । ହାଣ୍ଡି ମଧ୍ୟସ୍ଥ ଔଷଧ ଅନ୍ତର୍ଦ୍ଧୂମରେ ଦଗ୍ଧ ହେଲେ କାଢ଼ି ବାହାର କରି ଚୂର୍ଣ୍ଣ କରିବ । ପରେ ତ୍ରିକଟୁ ତ୍ରିଫଳା ଯୁଆଣୀ ଜୀରା ଚିତା ଏ ସମସ୍ତର ଚୂର୍ଣ୍ଣ ମିଳିତ କ୍ଷାର ସମାନ କ୍ଷାରସହ ମିଶାଇ ରଖିବ । ମାତ୍ରା-୧ ତୋଳା ଅନୁପାନ- ଉଷ୍ଣଜଳ ଏହାର ସେବନରେ ଗୁଳ୍ମ, ଶୂଳ, ଅଜୀର୍ଣ୍ଣ ,ଶୋଥ ଉଦର ଅଗ୍ନିମାନ୍ଦ୍ୟ, ଉଦାବର୍ତ୍ତ, ପ୍ଲୀହା ଇତ୍ୟାଦି ରୋଗ ଶାନ୍ତ ହୁଏ । ଏହା ବାତାଧିକ୍ୟେ ଈଷଦୁଷ୍ଣ ଜଳସହ, ପିତ୍ତାଧିକ୍ୟେ ଘୃତସହ, ଶ୍ଳେଷ୍ମାଧିକ୍ୟେ ଗୋମୂତ୍ରସହ ଏବଂ ତ୍ରିଦୋଷ ପ୍ରକୋପରେ କାଞ୍ଜି ପାଣିସହ ସେବନୀୟ ।

## ବରୁଣଘୃତ

ଘୃତ ୪ ସେର, କ୍ୱାଥାର୍ଥ—କୁଚ୍ଛିତ ବରୁଣ ଛାଲ ୧୬ ସେର, ଜଳ ୬୪ ସେର, ପାକାନ୍ତେ ଶେଷ ୧୬ ସେର, କଳ୍କାର୍ଥ ବରୁଣମୂଳର ଛାଲ, ଗୁଳୁଚି, ଶିଳାଜତୁ, କାକୁଡ଼ିମଞ୍ଜି, ବାଉଁଶଚେର, ତିଳନାଡ଼ କ୍ଷାର, ପଳାଶ କ୍ଷାର, ଯଷ୍ଟି ମୂଳ, ପ୍ରତ୍ୟେକ ଦୁଇତୋଳା, ଏହି ଘୃତ ଯଥାବିଧି ପାକ କରି ଅର୍ଦ୍ଧ ତୋଳା ମାତ୍ରାରେ ସେବନ କରିବ । ତାପରେ କିଛି କ୍ଷଣ ଛାଡ଼ି ଗୁଡ଼ ମିଶ୍ରିତ ଦଧିସର ଖାଇବ ପରେ ଭୋଜନ କରିବ । ଏହାଦ୍ୱାରା ଅଶ୍ମରୀ, ଶର୍କରା, ମୂତ୍ରକୃଚ୍ଛ୍ର ଇତ୍ୟାଦି ମୂତ୍ର ଦୋଷ ନିବାରିତ ହୁଏ ।

## ବସନ୍ତକୁସୁମାକର-

ପ୍ରବାଳ, ରସସିନ୍ଦୂର, ମୁକ୍ତା, ଅଭ୍ର ପ୍ରତ୍ୟେକ ୪ ତୋଳା, ରୌପ୍ୟ, ସ୍ୱର୍ଣ୍ଣ, ପ୍ରତ୍ୟେକ ୨ ତୋଳା, ଲୌହ, ସୀସା, ବଙ୍ଗ ପ୍ରତ୍ୟେକ

୩ ତୋଲା, ଏସମସ୍ତ ଏକତ୍ର ବାସଙ୍ଗ, ହଲଦୀ, ଇକ୍ଷୁ, ପଦ୍ମ, ମାଲତୀ, କଦଳୀଫୁଲ ଏମାନଙ୍କ ରସରେ ଶ୍ୱେତଚନ୍ଦନ, ମୃଗନାଭି ଜଳ, ଦୁଗ୍ଧ, ଏପରି ପ୍ରତ୍ୟେକ ସହ ୭ ଥର ଲେଖେ ଭାବନା ଦେଇ ୨ରତି ପ୍ରମାଣେ ବଟିକା କରିବ । ଏହା ରସାୟନାଧିକାରେ ଲିଖିତ । ମେହାଧିକାରେ ମେହ ରୋଗରେ ଓ ରସାୟନରେ ଏପରି ଛଅ ପ୍ରକାର ବସନ୍ତ-କୁସୁମାକର ପରିଲକ୍ଷିତ ହୁଏ । ଛଅ ପ୍ରକାର ବସନ୍ତକୁସୁମାକରର ଉପକରଣପ୍ରାୟ ସମାନ ହେଲେହେଁ ରସାୟନାଧିକାର କଥିତ ଭାଗଟି ଉତ୍କୃଷ୍ଟ ଅଟେ । ଅତଏବ ଏଠାରେ ରସାୟନାଧିକାର କଥିତ ଭାଗଟି ଲେଖାଗଲା ।

ଏହାର ସେବନରେ ପ୍ରମେହ, ବହୁମୂତ୍ର, ଧାତୁଦୌର୍ବଲ୍ୟ, ପ୍ରଦର, ଯକ୍ଷ୍ମା, କ୍ଷୟ, କାସ, ଶ୍ୱାସ ଇତ୍ୟାଦି ଅନେକ ରୋଗ ପ୍ରଶମିତ ହୁଏ । ଏହା ଅଳ୍ପ ଉଷ୍ଣବୀର୍ଯ୍ୟ, ଲହୁଣୀ, ମିଶ୍ରି, ଧାରୋଷ୍ଣଦୁଗ୍ଧ, ତ୍ରିଫଳାଜଳ ପ୍ରଭୃତି ଅନୁପାନରେ ଦେଲେ ସେତେ ଗରମ ରହେ ନାହିଁ । ଯକ୍ଷ୍ମା ରୋଗରେ ଶୁକ୍ର ଓ ମଳ କ୍ଷୟ ହେଲେ ଏହାଦ୍ୱାରା ଉତ୍ତମ ଫଳହୁଏ । ପ୍ରସବାନ୍ତେ ଅତିଶୟ ଦୁର୍ବଳତା ବା ଅନବୃମିତ ସ୍ରାବ ହେଲେ ସ୍ତ୍ରୀମାନେ ଏହାର ସେବନରେ ଆରୋଗ୍ୟ ହୁଅନ୍ତି । ଏହା ବଳ, ବୀର୍ଯ୍ୟ, କାନ୍ତି, ସ୍ମୃତି ପୁଷ୍ଟି ଇତ୍ୟାଦିକ ଅସାଧାରଣ ଭାବରେ ବୃଦ୍ଧି କରେ ।

## ବସନ୍ତଭାସ୍କର ବଟୀ

ରୁଦ୍ରାକ୍ଷ, ପ୍ରବାଳ, ସ୍ୱର୍ଣ୍ଣ, କସ୍ତୁରୀ, ଗୋରଚନା, ରସସିନ୍ଦୂର, ପ୍ରତ୍ୟେକ ସମ ଭାଗରେ ଏକତ୍ର ପାନ ରସରେ ମର୍ଦ୍ଦନ କରିବ । ମାତ୍ରା ଅର୍ଦ୍ଧରତି । ଏହାର ସେବନରେ ବାଳକମାନଙ୍କର କାସ, ଶ୍ୱାସ, କଫାଧିକ୍ୟ ରୋଗ ଇତ୍ୟାଦି ଶାନ୍ତହୁଏ । ଅନୁପାନ—ପାନରସ ଓ ମଧୁ ।

## ବାତକୁଳାନ୍ତକ

ତ୍ରିକଟୁ, ତ୍ରିଫଳା, ସୈନ୍ଧବ, କଳାଜୀରା, ରାସ୍ନା, ରକ୍ତଚନ୍ଦନ, ପ୍ରତ୍ୟେକ ସମଭାଗ, ସର୍ବସମାନ ଶୋଧିତ କୁଷମୁଷ୍ଟି (କୋଚିଲା) । ଏସମସ୍ତ ଏକତ୍ର ଲେମ୍ବୁରସରେ ୭ ଦିନ ମର୍ଦ୍ଦନ କରି ୨ ରତି ପ୍ରମାଣେ ବଟିକା କରିବ । ଅନୁପାନ—ଉଷ୍ଣଜଳ, କୋଷ୍ଠ ପରିଷ୍କାର ନହେଲେ ଅନୁପାନ— ତ୍ରିଫଳା କ୍ୱାଥ ଓ ମଧୁ । ଏହା ଆମବାତରେ ଅବ୍ୟର୍ଥ ମହୌଷଧ ।

## ବାତଗଜାଙ୍କୁଶ

ମନଃଶିଳା, ମହୁରା, ତାମ୍ର, ହିଙ୍ଗୁଳ, ସୈନ୍ଧବ, ଟାଙ୍ଗଣାଖଇ ପ୍ରତ୍ୟେକ ୧ ଭାଗ, ସମୁଦ୍ରଫେନ ଅର୍ଦ୍ଧଭାଗ, ଏସମସ୍ତ ଏକତ୍ର ଜୟନ୍ତୀପତ୍ର ରସରେ ମର୍ଦ୍ଦନ କରି ଚଣାପରି ବଟିକା କରିବ । ବ୍ୟଥା ଫୁଲା ଓ ଅଳ୍ପଜ୍ୱରଯୁକ୍ତ ନୂତନ ବାତରୋଗରେ ଏହା ବିଶେଷ ଉପକାରୀ । ଅନୁପାନ—ବେଲପତ୍ରରସ ଓ ମଧୁ ।

## ବାତଗଜେନ୍ଦ୍ରସିଂହ

ଅଭ୍ର, ଲୌହ, ପାରଦ, ଗନ୍ଧକ, ତାମ୍ର, ଫୀସା, ଟାଙ୍ଗଣାଖଇ, ମହୁରା, ସୈନ୍ଧବ, ଲବଙ୍ଗ, ହିଙ୍ଗୁ, ଜାଇଫଳ, ପ୍ରତ୍ୟେକ ୧ ତୋଳା, ଗୁଡ଼ତ୍ୱକ, ତେଜପତ୍ର, ଅଳାଇଚ, ତ୍ରିଫଳା, ଜୀରା ପ୍ରତ୍ୟେକ ଅର୍ଦ୍ଧତୋଳା, ଏସମସ୍ତ ଘୃତକୁମାରୀ ରସରେ ମର୍ଦ୍ଦନ କରି ୩ ରତି ପ୍ରମାଣେ ବଟିକା କରିବ । ଏହାର ସେବନରେ ବାତରୋଗ, ପକ୍ଷାଘାତ, ସ୍ନାୟୁ, ଜଡ଼ତା, ହିମିହିମାବାତ ପ୍ରଭୃତି ପୀଡ଼ା ପ୍ରଶମିତ ହୁଏ । ଅନୁପାନ—ରାସ୍ନା ପାଚନ ।

## ବାତ ଚିନ୍ତାମଣି-

ସ୍ୱର୍ଣ୍ଣ ୩ ତୋଳା, ରୌପ୍ୟ ୨ ତୋଳା, ଅଭ୍ର ୨ ତୋଳା, ଲୌହ ୫ ତୋଳା, ପ୍ରବାଳ ୩ ତୋଳା, ମୁକ୍ତା ୩ ତୋଳା, ରସସିନ୍ଦୂର ୭ ତୋଳା ଏସମସ୍ତ ଏକତ୍ର ଘୃତକୁମାରୀ ରସରେ ମର୍ଦ୍ଦନ କରି ୨ ରତି ପ୍ରମାଣେ ବଟିକା କରିବ । ଏହା ବଳବୀର୍ଯ୍ୟ ଜନକ, ସ୍ନାୟୁ ଦୌର୍ବଲ୍ୟ ନାଶକ ଓ ନାନାପ୍ରକାର ବାତ ବ୍ୟାଧିର ପ୍ରସିଦ୍ଧ ଔଷଧ । ଅନୁପାନ ବିଶେଷେ ବାତ ଓ ପିତ୍ତଜନିତ ନାନାରୋଗର ପ୍ରତିକାରକ । ଅନୁପାନ– ପୁଷ୍ଟି ସକାଶେ ଲହୁଣୀ ଓ ମିଶ୍ରି । ଉନ୍ମାଦରେ ତ୍ରିଫଳା ଜଳ । ହିଷ୍ଟିରିଆ (ଅପସ୍ମାର) ରୋଗରେ ଧାରୋଷ୍ଣ ଦୁଗ୍ଧ । ମେହ ରୋଗରେ ଡିମିରି ରସ । ପକ୍ଷାଘାତରେ ଦଶମୂଳ କ୍ୱାଥ ।

## ବାତ ବିଧ୍ୱଂସିନୀ

ପାରା, ଗନ୍ଧକ, ସୀଂସା, ବଙ୍ଗ, ଲୌହ, ତାମ୍ର, ଅଭ୍ର, ପିପ୍ପଳୀ, ଝାଙ୍ଗଣା, ମରିଚ, ଶୁଣ୍ଠି ପ୍ରତ୍ୟେକ ୧ ତୋଳା, ବସ୍ତନାଭି ୪ ୧ ତୋଳା ଏସମସ୍ତ ଏକତ୍ର ତ୍ରିକଟୁ କ୍ୱାଥ, ନିର୍ଗୁଣ୍ଡୀସ୍ୱରସ, ଅକରାନ୍ତ ରସ, ଅଶ୍ୱଗନ୍ଧା-କ୍ୱାଥ, ଚିତାମୂଳ ରସ, ଶ୍ୱେତଅର୍କମୂଳ ରସ, ବାସଙ୍ଗ ରସ, କଳାଦୁଦୁରା ପତ୍ର ରସ, ନିମ୍ବଛାଲି ରସ ଏ ପ୍ରତ୍ୟେକରେ ଦିନେଲେଖେ ଭାବନା ଦେଇ ୧ ରତି ପ୍ରମାଣେ ବଟିକା କରିବ । ଅନୁପାନ—ଅଦାରସ, ଏହା ସୃତିକା ବାତ, ଆମବାତ ସର୍ବବିଧ ଜ୍ୱର, ପକ୍ଷାଘାତ, ଅର୍ଦ୍ଦିତ, ହନୁସ୍ତମ୍ଭ ଆଦି ଚକ୍ଷୁରୋଗ, ହୃଦ୍‌ରୋଗ, କାସ, ଶ୍ୱାସ, ପାଣ୍ଡୁ, ଗୁଳ୍ମ, ଶୂଳ ଇତ୍ୟାଦି ରୋଗରେ ଅବ୍ୟର୍ଥ ଫଳପ୍ରଦ । ଏହା ଅନୁପାନ ବିଶେଷରେ ଉକ୍ତ ରୋଗମାନଙ୍କରେ ବ୍ୟବସ୍ଥେୟ ଅଟେ ।

## ବାତରାଜତୈଳ-

ତିଳତୈଳ ୧୬ ସେର, କ୍ୱାର୍ଥ—ଦଶମୂଳ, ଦ୍ୱିବଧ ବାଡ଼ିଅଲା, ରଙ୍ଗକାଲମୂଳ, ମହାବଲା, ସୁନାରି ମୂଳ, ଗୁଳୁଚୀ, ଛଚନା, ବାଇଡ଼ଙ୍କ, ସୋମରାଜ, ଗୃଧ୍ରନଖୀ, ଚିଲ, ଶ୍ୱେତପୁରୁଣୀ, ଚତ୍ରକ, ନିମ୍ବ, ମହାନିମ୍ବ, ଚରାଇତା, କେଉଁଅଁଶ୍ଚଳ ପ୍ରତ୍ୟେକ ୧୦ ପଲ ପାକାର୍ଥ ଜଳ ୪୬ ସେର, ପାକାନ୍ତେ ଶେଷ ୧୬ ସେର । ଏରଣ୍ଡ, ଦୁଦୁରା, ମେଷଶୃଙ୍ଗୀ, ଖାଡ଼ସିଜ୍, ଅରଖ, ପାଲଧୁଆ, ପ୍ରତ୍ୟେକ ମୂଳ ଓ୍ୱଳରସ୍ୱରସ ଦୁଇପଲ, ଶତାବରୀ ରସ ୧୬ ସେର । ଗବ୍ୟଦୁଗ୍ଧ ୬୪ ସେର, କଲ୍କାର୍ଥ—ରାସ୍ନା, ଚରାଇତା, ଉଶୁଣୀ, ଦେବଦାରୁ, ରକ୍ତଚନ୍ଦନ, ମଞ୍ଜିଷ୍ଠା, ସୋମରାଜୀ, ଶାରିବା ପଶାରୁଣୀ, ଅଶ୍ୱଗନ୍ଧା, ହଳଦୀ, ଦାରୁହଳଦୀ, ବଚ, କୁଡ଼, ଜଟାମଂସୀ, ଶୈଳେୟ, ଚନ୍ଦନ, ଦୁରାଳଭା, ଧାଇଫୁଲ, ଶୁଣ୍ଠୀ, ପଦ୍ମକାଠ, ଜୀରା, କଳାଜୀରା, ଯାଠିମଧୁ, ଗୁଡ଼ତ୍ୱକ, ଅଳାଇଚ, ନାଗେଶ୍ୱର, ତେଜପତ୍ର, ଅଜୋମୋଦା, ସଉ୍ଫ, କୁଡ଼, ପିପ୍ପଳୀ, ଚତ୍ରକ, ଗଣ୍ଡିଅନା, ଉଶୀର ବେଣା, ଋଦ୍ଧି, ବୃଦ୍ଧି, ମେଦା, ମହାମେଦା, ଜୀବକ, ଋଷଭକ, କାକୋଲୀ କ୍ଷୀରକାକୋଲୀ ପ୍ରତ୍ୟେକ ୧ ପଲ ଏବଂ ଗଣୋକ୍ତ ଗନ୍ଧଦ୍ରବ୍ୟ ସକଳ ଯଥାପ୍ରାପ୍ତ । ଏହି ତୈଳ ଯଥାବିଧି ପାକ କରି ପୀଡ଼ିତ ସ୍ଥାନରେ ମର୍ଦ୍ଦନ କଲେ ସକଳ ପ୍ରକାର ବାତଜପୀଡ଼ା ପ୍ରଶମିତ ହୁଏ ।

## ବାଳାନନ୍ଦ ବଟିକା-

ଅଭ୍ର, ରସସିନ୍ଦୂର, ଗୁଡ଼ତ୍ୱକ, ଅଳାଇଚ, ନାଗେଶ୍ୱର, ଜାଇଫଳ, ତ୍ରିକଟୁ, ଜୀରା, କଳାଜୀରା, ଜାଇପତ୍ରି, ତେଜପତ୍ର, ଲବଙ୍ଗ, ବଡ଼ଙ୍ଗ, କୁଡ଼, କକାଡ଼ାଶୃଙ୍ଗୀ, ଅଶ୍ୱଗନ୍ଧା, ଯୁଆଣୀ, କସ୍ତୁରୀ ପ୍ରତ୍ୟେକ ସମଭାଗ, ସର୍ବ ସମାନ ରସପାପୁଡ଼ି, ପାନରସରେ ମର୍ଦ୍ଦନ, ମାତ୍ରା—ମୁଗପ୍ରମାଣେ

ଅନୁପାନ – ମାତୃଦୁଗ୍ଧ ଓ ମଧୁ । ଏହାର ସେବନରେ ଶିଶୁମାନଙ୍କର ଜ୍ୱର ଗ୍ରହଣୀ, ପାଣ୍ଡୁ, ପ୍ରଭଶାଯ୍, କାସ ଯକୃତ୍, ପ୍ଲୀହା, ଦୁର୍ବଲ, ଅନାସୀ ଇତ୍ୟାଦି ବହୁରୋଗ ଶାନ୍ତହୁଏ ଓ ବଳକାନ୍ତି ବଢ଼େ । ଏହା ବାରମ୍ବାର ପରୀକ୍ଷିତ ।

## ବାସାକୁଷ୍ମାଣ୍ଡଖଣ୍ଡ-

ବାସଙ୍ଗମୂଳର ଛାଲି ୬୨ ପଲ, ପାକାର୍ଥ ଜଳ ୬୪ ସେର, ପାକାନ୍ତେ ଶେଷ ୧୬ ସେର, ସୁପକ୍ୱ ସ୍ଥୂଳତର କୁଷ୍ମାଣ୍ଡର ବୀଜ ବାଜାଧାର ରହିତ ରସକୋର ୫୦ ପଲ ଚପୁଡ଼ି ତାହାକୁ ୪ ସେର ଘିଅ ସହ ଭଜି ରଖିବ । ପରେ ୧୦୦ ପଲ ଚିନି, ଉକ୍ତ ବାସଙ୍ଗକ୍ୱାଥ ଓ ବର୍ଜିତ କୁଷ୍ମାଣ୍ଡ ରସ ଏହି ତିନଦ୍ରବ୍ୟ ଏକତ୍ର ପାକ କରି ଉପଯୁକ୍ତ ସମୟରେ ମୁଥା, ଅଳା, ବଂଶଲୋଚନା, ବ୍ରହ୍ମଯଷ୍ଟୀ, ଗୁଡ଼ତ୍ୱକ, ତେଜପତ୍ର ଅଳାଇଚ ପ୍ରତ୍ୟେକର ଚୂର୍ଣ୍ଣ ୨ ତୋଳା, ଏଲବାଳୁକ, ଶୁଣ୍ଠୀ ଧନିଆ, ମରିଚ, ପ୍ରତ୍ୟେକର ଚୂର୍ଣ୍ଣ ଏକପଲ, ପିପ୍ପଳୀ ଚୂର୍ଣ୍ଣ ୪ ପଲ ଏସମସ୍ତ ପ୍ରକ୍ଷେପ କରି ଉତ୍ତମରୂପେ ଆଲୋଡ଼ନ କରି ଓହ୍ଲାଇବ । ଶୀତଳ ହେଲେ ୧ ସେର ମଧୁ ମିଶାଇବ, ଏହାର ସେବନରେ କାସ, ଶ୍ୱାସ, କ୍ଷୟ, ହିକ୍କା, ରକ୍ତପିତ୍ତ, ହଲୀମକ, ହୃଦ୍ରୋଗ, ଅମ୍ଳପିତ୍ତ, ପୀନସ ଇତ୍ୟାଦି ରୋଗ ପ୍ରଶମିତ ହୁଏ ।

## ବାସାଚନ୍ଦନାଦିତୈଳ

ତିଲତୈଳ ୧୬ ସେର, କ୍ୱାଥାର୍ଥ - ବାସଙ୍ଗ ମୂଳ ଛାଲି ୧୨୫ ସେର ଜଳ ୬୪ ସେର ,ପାକାନ୍ତେ ଶେଷ ୧୬ - ସେର, ଲାକ୍ଷା ୭ ସେର, ଜଳ ୬୪ ସେର, ପାକାନ୍ତେ ଶେଷ ୧୬ ସେର, ରକ୍ତଚନ୍ଦନ, ଗୁଳୁଚି ବ୍ରହ୍ମଯଷ୍ଟୀ, ଦଶମୂଳ, ଭେଜୀ ପ୍ରତ୍ୟେକ ୬। ସେର, ଜଳ ୬୪ ସେର

ପାକାନ୍ତେ ଶେଷ ୧୬ ସେର, ଦଧିସର ୧୬ ସେର, କଳ୍କାର୍ଥ—ରକ୍ତ-ଚନ୍ଦନ, ରେଣୁକା, ଅଶ୍ୱଗନ୍ଧା, ପସାରୁଣୀ, ଗୁଡ଼ତ୍ୱକ, ଅଳାଇଚ, ତେଜପତ୍ର ପିପ୍ପଳୀ, ନାଗେଶ୍ୱର, ମେଦା, ମହାମେଦା, ବିକଙ୍କୁ, ସ୍ୱଷ୍ଟ,ଯାଠିମଧୁ, ଶୈଳଜ, ଗନ୍ଧଶୁଣ୍ଠୀ, କୁଡ଼, ଦେବଦାରୁ, ପ୍ରିୟଙ୍ଗୁ, ବାହାଡ଼ା ପ୍ରତ୍ୟେକ ୮ ତୋଳା ଏହି ତୈଳ ଯଥା ବିଧାନେ ପାକକରି ଦେହରେ ମର୍ଦ୍ଦନ କଲେ କାସ ଶ୍ୱାସ ରକ୍ତପିତ୍ତ ଯକ୍ଷ୍ମା ଇତ୍ୟାଦି ରୋଗ ଶାନ୍ତହୁଏ । ବାତ ପିତ୍ତସାମ୍ୟରେ ଏହା ବିଶେଷ ଉପକାରୀ । ଏହା ଛାତିରେ ମର୍ଦ୍ଦନ କଲେ ବିଶେଷ ଫଳ ହୁଏ ।

## ବାସାବ ଲେହ-

ବାସଙ୍ଗ ଛାଲି ୬ ସେର, ପାକାର୍ଥ ଜଳ ୧୬ ସେର, ପାକାନ୍ତେ ଶେଷ ୪ ସେର, ଏହି କ୍ୱାଥ ଛାଣି ତହିଁରେ ୧ ସେର ଚିନି ଓ ପାଉସେର ଘୃତ ମିଶ୍ରିତ କରି ପାକ କରିବ । ଲେହ ପରି ହେଲେ ପିପ୍ପଳୀ ଚୂର୍ଣ୍ଣ ପାଉସେର ମିଶାଇ ଚାଳ୍ପି ଓହ୍ଲାଇବ । ଶୀତଳ ହେଲେ ୧ ସେର ମଧୁ ମିଶାଇବ । ଏହା ରକ୍ତପିତ୍ତ, ରକ୍ତାମାଶୟ କାସ ପ୍ରଭୃତି ରୋଗକୁ ଶାନ୍ତକରେ ମାତ୍ରା—ଅର୍ଦ୍ଧତୋଳା ।

## ବିଡ଼ଙ୍ଗ ଲୌହ-

ପାରଦ, ଗନ୍ଧକ, ମରିଚ, ଜାଇଫଳ, ଲବଙ୍ଗ,ପିପ୍ପଳୀ ହରିତାଳ, ଶୁଣ୍ଠୀ ବଙ୍ଗ ଭସ୍ମ ପ୍ରତ୍ୟେକ ସମଭାଗ ସର୍ବସମାନ ଲୌହଭସ୍ମ, ଲୌହ ମିସି ସମସ୍ତ ଯେତେ, ତତ୍ ସମୁଦାୟର ସମାନ ବିଡ଼ଙ୍ଗଚୂର୍ଣ୍ଣ । ଏସମସ୍ତ ଉତ୍ତମ ଚୂର୍ଣ୍ଣ କରି ରଖିବ । ମାତ୍ରା —୨ ମଷାଠାରୁ ୪ ମଷା ପର୍ଯ୍ୟନ୍ତ । ଏହାର ସେବନରେ ଅର୍ଶ, ଅରୁଚି, ମନ୍ଦାଗ୍ନି, ବିସୂଚିକା, ଶୋଥ, ଶୂଳ, ଜ୍ୱର, ହିକ୍କା, ଶ୍ୱାସ, କାସ, କୃମି, ପାଣ୍ଡୁ ଇତ୍ୟାଦି ରୋଗ ଶାନ୍ତହୁଏ ।

## ବିନ୍ଦୁଘୃତ-

ଘୃତ ୪ ସେର, କଳ୍କାର୍ଥ – ଅର୍କକ୍ଷୀର ୨ ପଲ, ସିଜୁକ୍ଷୀର ୬ ପଲ, ହରିଡ଼ା, ପାଠଗୁଣ୍ଡି, ଚିଞ୍ଚାଇଲିମୂଳ, ଇନ୍ଦ୍ରଡ଼ମୂଳ, ସୁନାରିଫଳ ରସ, ଶ୍ୱେତଅପରାଜିତା ମୂଳ, ନୀଳବୃକ୍ଷ, ଦନ୍ତୀମୂଳ, ଶ୍ୱେତପୁଷ୍ପୀ, ଚିତାମୂଳ ପ୍ରତ୍ୟେକ ୧ ପଲ, ପାକାର୍ଥ ଜଲ ୧୬ ସେର ଏହି ଘୃତ ଯଥାବିଧି ପାକ କରି ଏଥିରୁ ଯେତେ ସଂଖ୍ୟକ ବିନ୍ଦୁ ସେବନ କରିବ ସେତେଥର ବିରେଚନ ହେବ । ଏହା କୁଷ୍ଠ, ଗୁଲ୍ମ, ଉଦାବର୍ତ୍ତ, ଉଦର ଇତ୍ୟାଦି ରୋଗରେ ପ୍ରୟୋଗ କରାଯାଏ ।

## ବିଷମଜ୍ୱରାନ୍ତକଲୌହ-

ପାରଦ ୨ ଭାଗ; ଗନ୍ଧକ ୨ ଭାଗ, ତାମ୍ର ୧ ଭାଗ, ସ୍ୱର୍ଣ୍ଣମାକ୍ଷିକ ୧ ଭାଗ ଲୌହ ୬ ଭାଗ, ଏ ସମସ୍ତ ଏକତ୍ର ଜୟନ୍ତୀ ପତ୍ର, କୋଇଲେଖା, ବାସଙ୍ଗ-ପତ୍ର, ଅଦା, ପାନ ଏମାନଙ୍କ ରସରେ ଯଥାକ୍ରମେ ପ୍ରତ୍ୟେକରେ ୫ ଥର ଲେଖେ ଭାବନା ଦେଇ ଚଣାପରି ବଟିକା କରିବ । ଏହାର ସେବନରେ ବିଷମଜ୍ୱର, ଗୁଳ୍ମ, ପ୍ଳୀହା, ଉଦର ପ୍ରଭୃତିରୋଗ ପ୍ରଶମିତ ହୁଏ । ଜଠରାଗ୍ନି ଦୀପ୍ତ ହୁଏ ଏବଂ ବଲ ଓ ବୀର୍ଯ୍ୟ ବୃଦ୍ଧି ପାଏ ।

## ବିଷମରିଚ୍ୟାଦି ତୈଲ-

ସର୍ଷପ ତୈଲ, ସେର, ଗୋମୂତ୍ର ୧୬ ସେର, କଳ୍କାର୍ଥ—ମରିଚ, ହରିତାଲ, ମନଃଶିଳା, ମୁଥା, ଅର୍କକ୍ଷୀର, କନିଅର ମୂଳ, ଜଟାମଂସୀ, ଇନ୍ଦ୍ରଡ଼ମୂଳ, ଗୋମୟରସ, ଗୋଠକାଙ୍କୁଡ଼ ମୂଳ, କୁଡ଼, ଦାରୁହଳଦୀ, ହଳଦୀ, ଦେବଦାରୁ,ରକ୍ତ ଚନ୍ଦନ ପ୍ରତ୍ୟେକ ୪ ତୋଳା, ମହୁରା ୧ ପଲ, ଏହି ତୈଲ ଯଥାବିଧାନ ପାକ କରି ଲଗାଇଲେ ସମସ୍ତପ୍ରକାର କୁଷ୍ଠ ଦଦ୍ରୁ,ଶ୍ୱିତ୍ର ସମସ୍ତ ପ୍ରକାର ଚର୍ମରୋଗ ବିନଷ୍ଟ ହୁଏ

## ବିଷ୍ଣୁତୈଳ-

ତିଲତୈଳ ୪ ସେର, କ୍ୱାଥାର୍ଥ—ଶତାବରୀ, ଶାଲପର୍ଣ୍ଣୀ, ପୃଶ୍ନିପର୍ଣ୍ଣୀ, ଗନ୍ଧଶୁଣ୍ଠୀ ବାଡ଼ିଅଲା, ଏରଣ୍ଡମୂଳ, ବେଲ, କଣ୍ଟାମାରିଷ ମୂଳ, ନାଗବଲା, ବୃହତୀକଣ୍ଟକୀମୂଳ ପ୍ରତ୍ୟେକ ୧୬ ତୋଲା, ପାକାର୍ଥ ଜଳ ୬୪ ସେର, ଶେଷ ୧୬ ସେର । କଳ୍କାର୍ଥ—ପୁନର୍ନବା, ବଚ, ଦେବଦାରୁ, ସଞ୍ଜ୍ଞା, ରକ୍ତଚନ୍ଦନ, ଅଗୁରୁ, ଶୈଳଜ, ତଗରପାଦୁକା, କୁଡ଼ ଅଳାଇଚ, ଜଟାମାଂସୀ, ଶାଲପର୍ଣ୍ଣୀ, ବାଡ଼ିଅଲା, ଅଶ୍ୱଗନ୍ଧା, ସୈନ୍ଧବ, ରାସ୍ନା ପ୍ରତ୍ୟେକ ୪ ତୋଲା, ଗବ୍ୟ ଦୁଗ୍ଧ ୮ ସେର, ଛାଗଦୁଗ୍ଧ ୮ ସେର, ଶତାବରୀ ରସ ୪ ସେର, ଏହି ତୈଳ ଯଥାବିଧି ପାକକରି ଦେହରେ ମର୍ଦ୍ଦନ କଲେ ସମସ୍ତପ୍ରକାର ବାତବ୍ୟାଧି ଓ ମସ୍ତିଷ୍କ ବିକୃତ ଶାନ୍ତହୁଏ ।

## ବୃଷ୍ୟକିରୀଟି-

ପାରଦ, ଗନ୍ଧକ, କସ୍ତୁରୀ, ରୌପ୍ୟଭସ୍ମ, ଛିକଟୁ ପ୍ରତ୍ୟେକ ୧ ଭାଗ ଗୁଡ଼ତ୍ୱକ, ଦ୍ରାକ୍ଷା, ବଙ୍ଗଭସ୍ମ, ଲବଙ୍ଗ, ଖଜୁର, ଜାଇପତ୍ରୀ, ନାଗେଶ୍ୱର, ଜାଇଫଳ, ଅଳାଇଚ ପ୍ରତ୍ୟେକ ୨ ଭାଗ, ଅଭ୍ର ୩ ଭାଗ, କର୍ପୂର ୩ ଭାଗ, ସର୍ବସମଷ୍ଟିର ସମାନ ରସସିନ୍ଦୁର, ରସସିନ୍ଦୂରରତୁଲ୍ୟ ଅହିଫେନ, ଅହିଫେନର ଅର୍ଦ୍ଧ ଧୁସ୍ତୁର ବୀଜ ଏସମସ୍ତ ଏକତ୍ର ଅପାମାର୍ଗ କ୍ୱାଥ, ଗଞ୍ଜାର କ୍ୱାଥ, ହୁଡ଼ୁରତେଲର ରସ ପ୍ରତ୍ୟେକରେ ଥରେଲେଖେ ମର୍ଦ୍ଦନ କରି ୧ ରତି ପ୍ରମାଣେ ବଟିକା କରିବ । ଏହା ବାଜୀକରଣର ଏକମାତ୍ର ମହୌଷଧ । ଅନୁପାନଭେଦରେ ଏହା ଗ୍ରହଣୀ, ଅତିସାର, ପ୍ରବାହିକା, ଅଗ୍ନିମାନ୍ଦ୍ୟ, ମେହ, ଧାତୁଦୌର୍ବଲ୍ୟ, ନପୁଂସକତ୍ୱ ଇତ୍ୟାଦି ରୋଗ ହରଣ କରେ ଓ ବଳ, ବର୍ଣ୍ଣ ମେଧା ଇତ୍ୟାଦି ବୃଦ୍ଧି କରେ । ଏହା ବାରମ୍ବାର ପରୀକ୍ଷିତ ।

## ବୃହତ୍ ଅଶ୍ୱଗନ୍ଧାଘୃତ

ଘୃତ ୪ ସେର, କ୍ୱାଥାର୍ଥ—ଅଶ୍ୱଗନ୍ଧା ୧୨॥ ସେର, ଜଳ ୬୪ ସେର, ପାକାନ୍ତେ ଶେଷ ୧୬ ସେର, ଛାଗମାଂସ ୨॥ ସେର, ପାକାର୍ଥ ଜଳ ୧୨୮ ସେର, ଶେଷ ୩୨ ସେର, ଦୁଗ୍ଧ ୧୬ ସେର, କଲ୍କାର୍ଥ—କାକୋଲୀ,କ୍ଷୀରକାକୋଲୀ, ବୃଦ୍ଧି, ମେଦ, ମହାମେଦ,ଜୀବକ,ବାଇଡ଼ଙ୍ଗ-ମଞ୍ଜୀ, ଋଷଭକ, ଅଳାଇଚ, ଯଷ୍ଠିମଧୁ, ଦ୍ରାକ୍ଷା, ମୁଦ୍ଗପର୍ଣ୍ଣୀ, ମାଷପର୍ଣ୍ଣୀ, ଜୀବନ୍ତୀ, ପିପ୍ପଳୀ, ବାଡ଼ିଅଳା, ଶତାବରୀ, ଭୂଇଁକଖାରୁ, ମିଳିତ ୧ ସେର ଅସନ୍ନ ପାକ ସମୟରେ କଲ୍କ ଛାଣି ପୁଣି ପାକ କରିବ । ପାକ ସିଦ୍ଧ ହେଲେ ଓହ୍ଲାଇ ଶୀତଳ ହେଲେ ଚିନି ଅଧସେର, ମଧୁ ଅଧ ସେର ମିଶାଇ ରଖିବ । ମାତ୍ରା—ଅର୍ଦ୍ଧ ତୋଳା ଠାରୁ ୧ ତୋଳା ଏହା ପାନ କଲେ ବଳ, ବୀର୍ଯ୍ୟ, କାନ୍ତି ଓ ଇନ୍ଦ୍ରିୟଶକ୍ତି ଅତିଶୟ ବୃଦ୍ଧିପାଏ ଏବଂ ଶ୍ୱାସ, କାସ, କ୍ଷୟ ଇତ୍ୟାଦି ଭୟଙ୍କର ରୋଗ ସବୁ ଶାନ୍ତହୁଏ । ମାନସିକ ଓ ସ୍ନାୟବିକ ସମସ୍ତ ଦୌର୍ବଲ୍ୟ ଓ ବିକୃତିର ଏହା ସର୍ବଶ୍ରେଷ୍ଠ ମହୌଷଧ ଓ ରସାୟନ ।

## ବୃହତ୍ ଚନ୍ଦ୍ରପ୍ରଭା ଗୁଡ଼ିକା

ବଡ଼ଙ୍ଗ, ଚିତାମୂଳ, ତ୍ରିକଟୁ, ତ୍ରିଫଳା, ଦେବଦାରୁ, ଗୁଲଇଁକାଠ, ଚିରାଇତା, ପିପ୍ପଳାମୂଳ, ମୁଥା, ଗନ୍ଧଶୁଣ୍ଠୀ, ବଚ, ସ୍ୱର୍ଣ୍ଣମାକ୍ଷିକ, ସୈନ୍ଧବ-ଲବଣ, ସଚଳଲବଣ, ଯବକ୍ଷାର, ସାଚକ୍ଷାର, ହଳଦୀ, ଦାରୁହଳଦୀ, ଧନିଆ, ଗଜପିପ୍ପଳୀ, ଭୁଇଁଧୀ ପ୍ରତ୍ୟେକ ୨ ତୋଲା, ଶିଳାଜତୁ ୮ ପଲ, ଗୁଗୁଲୁ ୨ ପଲ, ଲୌହ ୨ ପଲ, ଚିନି ୪ ପଲ, ବଂଶଲୋଚନା, ଅଭ୍ର, ରସସିନ୍ଦୂର, ଦନ୍ତୀମୂଳ, ତନ୍ତୁଡ଼ିମୂଳ ପ୍ରତ୍ୟେକ ୧ ପଲ, ଗୁଡ଼ତ୍ୱକ, ତେଜପତ୍ର, ଅଳାଇଚ ମିଳିତ ୧ ପଲ ଏସମସ୍ତ ମର୍ଦ୍ଦନ କରି ଗୁଡ଼ିକା ପ୍ରସ୍ତୁତ କରିବ । ଅନୁପାନ ତକ୍ର, ଦଧିସର, ଛାଗମାଂସ ରସ, ଜାଙ୍ଗଲମାଂସ-

ରସ, ଘୃତ ବା ଶୀତଳ ଜଳ ! ଏହାର ସେବନରେ ଅର୍ଶ, ମେହ, ଭଗନ୍ଦର, ପ୍ରଭୃତି ନାନାରୋଗ ବିନଷ୍ଟ ହୁଏ ଏବଂ ବଳବୀର୍ଯ୍ୟାଦି ବୃଦ୍ଧିପାଏ । ମାତ୍ରା-ପ୍ରଥମେ ୪ ରତି ଠାରୁ ଆରମ୍ଭ କରି ଏକ ତୋଳା ପର୍ଯ୍ୟନ୍ତ ବୃଦ୍ଧି କରିବ । ମଧୁ ଘୃତ ସହ ସେବନୀୟ ।

## ବୃହତ୍ ଚନ୍ଦ୍ରୋଦୟ ମକରଧ୍ୱଜ

ଶୋଧିତ ସୂକ୍ଷ୍ମ ସ୍ୱର୍ଣ୍ଣପତ୍ର ୧ ପଲ, ଶୋଧିତ ପାରଦ ୮ ପଲ ଏହି ଉଭୟ ଏକତ୍ର ଉତ୍ତମରୂପେ ମିଶ୍ରିତ କରି ତାହାସହ ଗନ୍ଧକ ୧୬ ପଲ ମିଶାଇ କଜ୍ଜଳୀ କରିବ । ଏହି କଜ୍ଜଳୀକୁ ରକ୍ତବର୍ଣ୍ଣ କପାଫୁଲ ରସ ଓ ଘୃତକୁମାରୀ ରସରେ ଭାବନାଦେଇ ଶୁଷ୍କ କରିବ । ପରେ ଏସମସ୍ତ ସମତଳ ବୋତଲ ମଧ୍ୟରେ ସ୍ଥାପନ କରି ବୋତଲ ମୁଖରେ ଏକ ଖଣ୍ଡ ଖଡ଼ି ଯୋଡ଼ିଣୀ କରି ବାଲୁକା ପୂର୍ଣ୍ଣ ହାଣ୍ଡି ମଧ୍ୟରେ ଏହି ବୋତଲ ଊର୍ଦ୍ଧ୍ୱ ମୁଖରେ ବସାଇ ବୋତଲର ଗଳା ପର୍ଯ୍ୟନ୍ତ ବାଲି ରଖିବ । ତତ୍ପୂର୍ବରୁ ବୋତଲଟିରେ ସରୁକନା ଗୁଡ଼ାଇ ମାଟି ଲେପି ଶୁଖାଇ ଏପରି ସାତଥର ସ୍ତର କରି ରଖିଥିବ । ନୋହିଲେ ବୋତଲଟି ଫାଟିଯାଇ ଔଷଧ ଗୁଡ଼ିକ ବାଲିରେ ମିଶିଯାଇପାରେ । ବାଲୁକାଯନ୍ତ୍ର ତଳେ କ୍ରମାଗତ ୩ ଦିନ ୩ ରାତ୍ର ଅବିଚ୍ଛିନ୍ନ ଭାବରେ ଜାଳ ଦେବ । ଏହ ଦ୍ୱାରା ବୋତଲର ଗଳ ଦେଶରେ ଅରୁଣ ବର୍ଣ୍ଣ ଯେସମସ୍ତ ଔଷଧାଂଶ ସଂଲଗ୍ନ ହେବ, ତାହା ବାହାର କରି ଗ୍ରହଣ କରିବ । ଏହି ଔଷଧ ୧ ପଲ କର୍ପୂର ୨ ପଲ, ଜାଇଫଳ, ପିପ୍ପଳୀ, ଲବଙ୍ଗ ପ୍ରତ୍ୟେକ ୪ ପଲ, ମୃଗନାଭି ଅର୍ଦ୍ଧତୋଳା ଏସମସ୍ତ ଏକତ୍ର ତାମ୍ବୁଲ ରସରେ ମର୍ଦ୍ଦନ କରି ୨ ରତି ପ୍ରମାଣେ ବଟିକା କରିବ । ଅନୁପାନ—ପାନରସ । ପଥ୍ୟ—ଘୃତ ଘନୀଭୂତ ଦୁଗ୍ଧ, ମାଂସ ଓ ପିଷ୍ଟକ ପ୍ରଭୃତି । ଏହା ବୀର୍ଯ୍ୟକୁ ଅତିଶୟ ବୃଦ୍ଧି କରେ ଓ ମଦୋନ୍ମତ୍ତ

ପ୍ରମଦାଗଣର ଗର୍ବ ନିବାରଣ କରେ । ଏହାର ସେବନରେ ପ୍ରାୟ ସମସ୍ତ ପ୍ରକାର ରୋଗ ପ୍ରଶମିତ ହୋଇ ମନୁଷ୍ୟ ସମସ୍ତ ଇନ୍ଦ୍ରିୟ ଶକ୍ତିରେ ପୂର୍ଣ୍ଣ ହୋଇ କନ୍ଦର୍ପ ପରି ଦିଶେ ।

## ବୃହତ୍ ଛାଗଳାଦି ଘୃତ

ଗବ୍ୟଘୃତ ୧୬ ସେର, କ୍ୱାଥାର୍ଥ–ନପୁଂସକ ଛାଗମାଂସ ୧୦୦ ପଲ, ପାକାର୍ଥ ଜଳ ୬୪ ସେର, ଶେଷ ୧୬ ସେର, ଦଶମୂଳ ପ୍ରତ୍ୟେକ ୧୦ ପଲ, ଜଳ ୬୪ ସେର, ଶେଷ ୧୬ ସେର, ଅଶ୍ୱଗନ୍ଧା ୧୦୦ ପଲ, ଜଳ ୬୪ ସେର, ଶେଷ ୧୬ ସେର, ବାଡ଼ିଅଁଳା ୧୦୦ ପଲ, ଜଳ ୬୪ ସେର, ଶେଷ ୧୬ ସେର, ଦୁଗ୍ଧ ୧୬ ସେର, ଶତାବରୀ ରସ ୧୬ ସେର, କଲ୍କାର୍ଥ, ଜୀବନ୍ତୀ, ଯଷ୍ଟିମଧୁ, ଦ୍ରାକ୍ଷା, କାକୋଲୀ, କ୍ଷୀରକାକୋଲୀ, ନୀଳୋତ୍ପଳ, ମୁଥା, ରକ୍ତଚନ୍ଦନ, ରାସ୍ନା, ମୁଦ୍ଗପର୍ଣ୍ଣୀ, ମାଷପର୍ଣ୍ଣୀ, ଶ୍ୟାମାଲତା, ଶାରିବା, ମେଦା, ମହାମେଦା, ଋଦ୍ଧି, ଜୀବକ, ଋଷଭକ, ଗନ୍ଧଶୁଣ୍ଠୀ, ଦାରୁହଳଦୀ, ପ୍ରିୟଙ୍ଗୁ, ତ୍ରିଫଳା, ତଗରପାଦୁକା, ତାଳୀଶପତ୍ର, ପଦ୍ମକାଠ, ଅଳାଇଚ, ତେଜପତ୍ର, ଶତାବରୀ, ନାଗେଶ୍ୱର, ଜାଇଫଳ, ଧନିଆ, ମଞ୍ଜିଷ୍ଠା, ଡ଼ାଳିମଚୋପା, ଦେବଦାରୁ, ରେଣୁକା, ଏଲବାଲୁକ, ବିଡ଼ଙ୍ଗ, ଜୀରା, ପ୍ରତ୍ୟେକ ୪ ତୋଳା, ତାମ୍ର ପାତ୍ରରେ ମୃଦୁଅଗ୍ନିରେ ପାକକରିବ, ପାକ ଶେଷରେ ଶୀତଳ ହେଲେ ଘୃତ ଛାଣି ତହିଁରେ ଶାକର ୨ ସେର ମିଶାଇ ମୃନ୍ମୟ ସ୍ନିଗ୍ଧଭାଣ୍ଡରେ ରଖିବ । ମାତ୍ରା ୨ ତୋଳା, ବ୍ୟାଧିବିବେଚନା କରି ଦୁଗ୍ଧାଦିଅନୁପାନ ବ୍ୟବସ୍ଥା କରିବ । ଏହି ଘୃତ ବାତ ବ୍ୟାଧିର ଶ୍ରେଷ୍ଠ ଔଷଧ । ଏହା ପାନକଲେ ଅପସ୍ମାର, ଉନ୍ମାଦ, ପକ୍ଷାଘାତ, ଆଧ୍ମାନ କୋଷ୍ଠରୋଧ, କର୍ଣ୍ଣରୋଗ, ଶିରୋରୋଗ, ବଧିରତା, ଅପତନ୍ତ୍ରକ, ଭୂତୋନ୍ମାଦ, ଗୃଧ୍ରସୀ ଏବଂ ଅନ୍ୟାନ୍ୟ ନାନାପ୍ରକାର ବାତଜ ଓ ପିତ୍ତଜ

ପୀଡ଼ାର ଶାନ୍ତିହୁଏ । ଏହାକୁ ସେବନ କଲେ ଶରୀର ବିଲକ୍ଷଣ ପୁଷ୍ଟ, ଓ ଇନ୍ଦ୍ରିୟ ଶକ୍ତି ପ୍ରବଳ ହୋଇଉଠେ ।

## ବୃହତ୍ ଜୀରକାଦି ମୋଦକ-

ଜୀର, କଳାଜୀର, କୁଡ଼, ଶୁଣ୍ଠୀ, ପିପ୍ପଳୀ, ମରିଚ, ତ୍ରିଫଳା, ଗୁଡ଼ତ୍ୱକ, ତେଜପତ୍ର, ଅଳାଇଚ, ନାଗେଶ୍ୱର, ବଂଶଲୋଚନା, ଲବଙ୍ଗ, ଶୈଳଜ, ରକ୍ତଚନ୍ଦନ, ଶ୍ୱେତଚନ୍ଦନ, କାକୋଳୀ, କ୍ଷୀରକାକୋଳୀ, ଜାଇପତ୍ରି, ଜାଇଫଳ, ଯାଠିମଧୁ, ପାନମହୁରି, ଜଟାମାଂସୀ, ମୁଥା, ସଚଳ ଲବଣ, ଗନ୍ଧଶୁଣ୍ଠୀ, ଧନିଆ, ମୁରାମାଂସୀ, ଦ୍ରାକ୍ଷା, ନଖୀ, ସଜୁପ, ପଦ୍ମକାଠ, ମେଥୀ, ଦେବଦାରୁ, ଗୁରୁବେଲ, ନାଳୁକା, ସୈନ୍ଧବ ଲବଣ, ଗଜ ପିପ୍ପଳୀ, କର୍ପୂର, ପ୍ରିୟଙ୍ଗୁ, କୁନ୍ଦୁରୁ ଖୋଟି, ପ୍ରତ୍ୟେକ ୧ ଭାଗ, ଲୌହ ଭସ୍ମ, ଅଭ୍ରଭସ୍ମ, ବଙ୍ଗଭସ୍ମ ପ୍ରତ୍ୟେକ ୬ ଭାଗ, ସମୁଦାୟ ଚୂର୍ଣ୍ଣରସମାନ ଭର୍ଜିତ ଜୀରକ ଚୂର୍ଣ୍ଣ, ସର୍ବସମଷ୍ଟିର ଦ୍ୱିଗୁଣ ଚିନି, ଚିନି ପାକକରି ଉପଯୁକ୍ତ ସମୟରେ ଚୂର୍ଣ୍ଣ ସକଳ ପ୍ରକ୍ଷେପ କରି ଓହ୍ଲାଇବ. ଶୀତଳ ହେଲେ ଘୃତ ଓ ମଧୁ ଦେଇ ମୋଦକ ପ୍ରସ୍ତୁତ କରିବ । ପ୍ରାତଃକାଳେ ଗବ୍ୟ ଦୁଗ୍ଧ ଓ ଚିନିସହ ସେବନ କରିବ । ଏହା ସେବନ କଲେ ଅତିସାର, ଗ୍ରହଣୀ ପ୍ରଦର, ପ୍ରମେହ, ଅଗ୍ନିମାନ୍ଦ୍ୟ ଇତ୍ୟାଦି ବହୁରୋଗ ପ୍ରଶମିତ ହୁଏ ।

## ବୃହତ୍ ବଙ୍ଗେଶ୍ୱର-

ବଙ୍ଗଭସ୍ମ, ପାରଦ, ଗନ୍ଧକ, ରୌପ୍ୟଭସ୍ମ କର୍ପୂର, ଅଭ୍ରଭସ୍ମ, ପ୍ରତ୍ୟେକ ୬ ତୋଳା, ସ୍ୱର୍ଣ୍ଣଭସ୍ମ, ମୁକ୍ତାଭସ୍ମ. ପ୍ରତ୍ୟେକ ଅର୍ଦ୍ଧତୋଳା, ଏ ସମସ୍ତ ଏକତ୍ର କେଶରାଜରସରେ ଭାବନା ଦେଇ ୬ ରତିପ୍ରମାଣେ ବଟିକା କରିବ । ଏହାର ସେବନରେ ପ୍ରମେହ, ମୂତ୍ରକୃଚ୍ଛ୍ର, ସୋମରୋଗ, ବହୁମୂତ୍ର

ଓ ମୂତ୍ରାତିସାର ପ୍ରଭୃତି ନିବାରିତ ହୋଇ ବଳ, ବୀର୍ଯ୍ୟ, ଓ କାନ୍ତି ବୃଦ୍ଧିପାଏ । ଅନୁପାନ— ଦୁଗ୍ଧ ।

## ବୃହତ୍ ଭୃଙ୍ଗରାଜ ତୈଳ-

ତିଳ ତୈଳ ୧୬ ସେର, ଭୃଙ୍ଗରାଜରସ ୧୬ ସେର, କେଶରାଜରସ ୧୬ ସେର, ତ୍ରିଫଳାକ୍ୱାଥ ୧୬ ସେର, ଦୁଗ୍ଧ ୧୬ ସେର, କଳ୍କ ନିମନ୍ତେ ଦୁଧଲଇ, ଦୁବ୍‌ଲଭି, ବାଡ଼ିଅଳା, ସ୍ୱଧା, ନୋଲାଗଛରମୂଳ, ଅଙ୍କୋଲମୂଳ, ଦାରୁହଳଦୀ, ଦାସକେରଣ୍ଡା, କେଶରାଜ, ମେହେନ୍ଦିକାଲ ମୂଳ, ଗୋଠ କାକୁଡ଼ିମୂଳ, କେତକୀ ଫୁଲ, ବଢ଼ଛାଲ, କଦଳୀମୂଳ, ମନ୍ଦାର ଫୁଲ, ଗେରୁ, ମଣ୍ଡୁର ଭସ୍ମ, ତ୍ରିଫଳା, ଲୋଧ, ଶ୍ୱେତପୁରୁଣୀ, ମୁଥା, ଶତାବରୀ, ଉଶୀରବେଣା, ରଙ୍ଗକଇଁମାଡ଼ି, ପଦ୍ମମାଡ଼ି, ମଞ୍ଜିଷ୍ଠା, ରକ୍ତ ଚନ୍ଦନ, ରସାଞ୍ଜନ, ମୟୂରଗିରଥି, ବେଲଛାଲ, ଜଡ଼, ପ୍ରିୟଙ୍ଗୁ, ବାହାଡ଼ା, ଆମ୍ବ କୋଇଲି, ପଦ୍ମମଞ୍ଜୀ, ଯାଠିମଧୁ, ଅଶୋକ ଫୁଲ, ପଦ୍ମ ଫୁଲ, ନେଳ କଇଁ, ଶ୍ୱେତ ଚନ୍ଦନ, ଦେବଦାରୁ, ଅଗୁରୁ, ଗୁଡ଼ତ୍ୱକ, ତେଜପତ୍ର, ନାଗେଶ୍ୱର, ପଦ୍ମକାଠ, ଗନ୍ଧଶୁଣ୍ଠୀ, ମୁଥା, ଶ୍ୱେତଦୁବ, ଜୀବକ, ଋଷଭକ, ମେଦା, ମହାମେଦା, କାକୋଲୀ, କ୍ଷୀରକାକୋଲୀ, ମୁଦ୍ଗପର୍ଣ୍ଣୀ, ମାଷପର୍ଣ୍ଣୀ, ଜୀବନ୍ତୀ, ଏସମସ୍ତ ଏକତ୍ର ମିଶି ୪ ସେର, ଏହି ଦ୍ରବ୍ୟମାନଙ୍କ ସହ ଯଥାବିଧି ତୈଳ ପାକ କରି ଏହି ତୈଳ ପାନ, ଅଞ୍ଜନ ଓ ମସ୍ତକରେ ମର୍ଦ୍ଦନ କଲେ ବାତ, ପିତ୍ତ, ସକଳ ପ୍ରକାର ଶିରୋ ରୋଗ, ଚକ୍ଷୁରୋଗ, ଅକାଳପଳିତ ଇନ୍ଦ୍ରଲୁପ୍ତ ମସ୍ତିଷ୍କ ବିକୃତି, ମନୋଭ୍ରମ, ଉନ୍ମାଦ ଇତ୍ୟାଦି ରୋଗ ଦୂରହୁଏ ! କେଶ କୃଷ୍ଣବର୍ଣ୍ଣ, କୁଞ୍ଚିତ, ଚିକ୍କଣ ଓ ବହଳ ହୋଇଉଠେ ଏହା ପାଦରେ ମର୍ଦ୍ଦନ କଲେ ମଧ୍ୟ ସେଠାରେ ଲୋମ ଜାତହୁଏ । ଏହାର ନସ୍ୟରେ ଅନେକ ଶିରୋରୋଗ ଓ କେଶରୋଗ ଶାନ୍ତ ହୁଏ ।

## ବୃହତ୍ ଲବଙ୍ଗାଦି-

ଲବଙ୍ଗ, ଜାଇଫଳ, ଧନିଆଁ, କୁଡ଼, ଜୀରା, କଳାଜୀରା, ତ୍ରିକଟୁ, ତ୍ରିଫଳା, ଅଳାଇଚ, ଗୁଡ଼ତ୍ୱକ, ଝାଙ୍ଗୋଖଇ, କଙ୍କଡ଼ ଭସ୍ମ, ମୁଥା, ବଚ, ଯୁଆଣୀ, ବିଟଲୁଣ, ସୈନ୍ଧବ, ପ୍ରତ୍ୟେକ ୧ ଭାଗ, ପାରଦ, ଗନ୍ଧକ, ଅଭ୍ର ଭସ୍ମ, ପ୍ରତ୍ୟେକ ଅର୍ଦ୍ଧଭାଗ, ଲୌହ ଭସ୍ମ ୧ ଭାଗ, ଏ ସମସ୍ତ ଏକତ୍ର ପାନ ରସରେ ମର୍ଦ୍ଦନ କରି ୨ ରତି ପ୍ରମାଣେ ବଟିକା କରିବ । ଅନୁପାନ ଉଷ୍ଣ ଜଳ । ଏହାର ସେବନରେ ଆମାଶୟ ଦୋଷ, ଗ୍ରହଣୀ, କଫଜନିତଶୂଳ, ଜ୍ୱର, କୁଷ୍ଠ, ଅମ୍ଳପିତ୍ତ, ଅଗ୍ନିମାନ୍ଦ୍ୟ ଇତ୍ୟାଦି ରୋଗ ଦୂର ହୁଏ ।

## ବୃହତ୍ ଶୂରଣ ମୋଦକ-

ଓଲଚୂର୍ଣ୍ଣ, ୧୬ ତୋଳା, ଚିତାମୂଳ ଚୂର୍ଣ୍ଣ ୮ ତୋଳା, ଶୁଣ୍ଠୀ ଚୂର୍ଣ୍ଣ ୪ ତୋଳା, ମରିଚ ୨ ତୋଳା, ତ୍ରିଫଳା, ପିପ୍ପଳୀ ପିପ୍ପଳାମୂଳ, ତାଳୀଶ ପତ୍ର, ଭାଲିଆ, ବଡ଼ଙ୍ଗ, ପ୍ରତ୍ୟେକ ଚୂର୍ଣ୍ଣ ୪ ତୋଳା, ତାଳମୂଳୀ ୮ ତୋଳା, ମଣ୍ଡୁକମଞ୍ଜୀ ୧୬ ତୋଳା ଗୁଡ଼ତ୍ୱକ ୨ ତୋଳା, ଅଳାଇଚ ୨ ତୋଳା, ଏ ସମସ୍ତ ଏକତ୍ର ଚୂର୍ଣ୍ଣ ଗୁଡ଼ ୧୮୦ ତୋଳାସହ ମିଶାଇ ମର୍ଦ୍ଦନ କରି ମୋଦକ ଗଢ଼ିବ । ଶୀତଳ ଜଳସହ ୧ ତୋଳା ମାତ୍ରାରେ ସେବନ କରିବ । ଏହାର ସେବନ କାଳରେ ଗୁରୁପାକ ଓ ବଳକର ଆହାର ପଥ୍ୟ କରିବ । ଶସ୍ତ୍ର ପ୍ରୟୋଗ, କ୍ଷାର ପ୍ରୟୋଗ ଓ ଅଗ୍ନିକ୍ରିୟା ନଥାଇ ସୁଦ୍ଧା ଏହାର ସେବନରେ ଅର୍ଶ ବିନଷ୍ଟ ହୁଏ । ଏହା ଶୋଥ ଶ୍ଳୀପଦ, ଗ୍ରହଣୀ, ପ୍ଳୀହା, ରାଜଯକ୍ଷ୍ମା, ପ୍ରମେହ, କାସ, ଶ୍ୱାସ, ପ୍ରଭୃତି ରୋଗରେ ଉପକାରୀ ।

## ବୃହତ୍ ଶୃଙ୍ଗାରାଭ୍ର-

ପାରଦ, ଗନ୍ଧକ, ଝାଙ୍ଗଣାଖଇ, ନାଗେଶ୍ୱର, କର୍ପୂର, ଜାଇପତ୍ରି, ଲବଙ୍ଗ, ତେଜପତ୍ର, ଦୂଦୁରାମଞ୍ଜୀ, ପ୍ରତ୍ୟେକ ୨ ତୋଳା, କୃଷ୍ଣାଭ୍ର ଭସ୍ମ ୮ ତୋଳା, ତାଲୀଶ ପତ୍ର, ମୁଥା, କୁଡ଼, ଜଟାମଂସୀ, ଗୁଡ଼ୁଚ୍ଚକ, ଧାଇଫୁଲ, ଅଳାଇଚ, ତ୍ରିଫଳା, ତ୍ରିକଟୁ, ଗଜପିପ୍ପଳୀ, ପ୍ରତ୍ୟେକ ୪ ତୋଳା ଏ ସମସ୍ତ ଏକତ୍ର ପିପ୍ପଳୀକ୍ୱାଥରେ ମର୍ଦ୍ଦନ କରି ୨ ରତି ପ୍ରମାଣେ ବଟିକା କରିବ । ଏହା ଗୁଡ଼ୁଚ୍ଚକ ଚୂର୍ଣ୍ଣ ଓ ଯାଠିମହୁ ଚୂର୍ଣ୍ଣସହ ସେବନ କଲେ ଅଗ୍ନିମାନ୍ଦ୍ୟ, ଅରୁଚି, ପାଣ୍ଡୁ, କାମଳା, ଉଦର, ଶୋଥ ଅନାହ, ଗ୍ରହଣୀ, କାସ, ଶ୍ୱାସ, ଯକ୍ଷ୍ମା ପ୍ରଭୃତି ନାନା ରୋଗ ଦୂରହୁଏ ।

## ବୈଶ୍ୱାନର ଚୂର୍ଣ୍ଣ-

ସୈନ୍ଧବଲବଣ ୨ ଭାଗ, ଯୁଆଣୀ ୫ ଭାଗ, ଶୁଣ୍ଠୀ ୫ ଭାଗ, ହରିଡ଼ା ୧୨ ଭାଗ, ଏ ସମସ୍ତ ଏକତ୍ର ଚୂର୍ଣ୍ଣ କରିବ । ଅନୁପାନ- ଦଧି ମଣ୍ଡ, ତକ୍ର, କାଞ୍ଜି- ଘୃତ ବା ଉଷ୍ଣଜଳ । ଏହାର ସେବନରେ ଆମବାତ, ଗୁଲ୍ମ, ଶୂଳ, ଅର୍ଶ, ଅନାହ ପ୍ରଭୃତି ପ୍ରଶମିତ ହୁଏ ଓ ବାୟୁର ଅନୁଲୋମ ହୁଏ ।

## ବ୍ୟାଘ୍ରୀହରିତକୀ-

ମୂଳ, ପୁଷ୍ପ ଓ ପତ୍ର ସହିତ ଭେଜି ୧୦୦ ପଲ, ଶ୍ଲଥ ପୋଟଳ ବନ୍ଧ ଖୋଷା ହରିଡ଼ା ୧୦୦ ଗୋଟି, ପାକାର୍ଥ ଜଳ ୬୪ ସେର, ଶେଷ ୧୬ ସେର, ଏହି କ୍ୱାଥ ଜଳସହ ପୁରୁଣା ଗୁଡ଼ ୧୦୦ ପଲ ଓ ସିଦ୍ଧ ହରିଡ଼ା ସକଳ ବୀଜ ରହିତ କରି ଏକତ୍ର ପାକ କରିବ । ଘନ ହେଲେ ତ୍ରିକଟୁ ପ୍ରତ୍ୟେକ ୨ ପଲ, ଚତୁର୍ଜାତକ ମିଳିତ ୧ ପଲ ଚୂର୍ଣ୍ଣ

ସକଳ ପ୍ରକ୍ଷେପ କରି ଆଲୋଡ଼ନ କରି ଓହ୍ଲାଇବ, ଶୀତଳ ହେଲେ ମଧୁ ୬ ପଲ ମିଶାଇ ରଖିବ । ମାତ୍ରା ଲେହ ଅର୍ଦ୍ଧତୋଳା ଓ ସିଦ୍ଧ ହରିଡ଼ା ଗୋଟିଏ । ଏହାର ସେବନରେ ନାନାବିଧ କାସ, ଯକ୍ଷ୍ମା, ଶ୍ୱାସ, ଉରଃକ୍ଷତ ଓ ପୀନସ ପ୍ରଭୃତି ରୋଗ ବିନଷ୍ଟ ହୁଏ ।

## ବ୍ରାହ୍ମୀଘୃତ-

ପୁରାତନ ଗବ୍ୟ ଘୃତ ୪ ସେର, ବ୍ରହ୍ମୀଶାକ ରସ ୧୬ ସେର, କଲ୍କାର୍ଥ—ବଚ, କୁଡ଼, ଶଙ୍ଖପୁଷ୍ପୀଗ, ମିଳିତ ୧ ସେର ଯଥାବିଧି ପାକକରି ଏହି ଘୃତ ସେବନ କଲେ ଉନ୍ମାଦ, ଅପସ୍ମାର, ବାତବ୍ୟାଧି ଓ ଗ୍ରହାବେଶ ଦୂର ହୁଏ ।

## ଭଲ୍ଲାତକଲେହ-

ରାସ୍ନା, ବଡ଼ଙ୍ଗ, ଶୁଣ୍ଠି, ଦେବଦାରୁ, ଶ୍ୱେତ ପୁରୁଣୀ, ବ୍ରହ୍ମଯଷ୍ଟି, ପିପ୍ପଳୀମୂଳ, ପାନମହୁରି, ହରିଡ଼ା, ଗୁଳୁଚି, ସୁଗନ୍ଧ, କୁଡ଼, ହିଙ୍ଗୁ, ବୃଦ୍ଧଦାରକ ମୂଳ, କଣ୍ଟକାରୀ, ବଚ, ଶୃଙ୍ଗୀକାଠ, ମୁଥା, ହବୁଷୀ, ଯଷ୍ଟିମଧୁ, ଜାଇଫଳ, ଲବଙ୍ଗ, ଚିତାମୂଳ, ଅଜାନବନ୍ଧ, ପିପ୍ପଳ, ଦୁରାଲଭା, ପ୍ରିୟଙ୍ଗୁ, ରେଣୁକା, ଶତାବରୀ, ବାସଙ୍ଗ, ଅଭ୍ରଭସ୍ମ, ବଙ୍ଗଭସ୍ମ, ପ୍ରତ୍ୟେକ ଚୂର୍ଣ୍ଣ ୧ ତୋଳା, ସର୍ବ ସମାନ ଶୋଧିତ ଭାଲିଆ ଚୂର୍ଣ୍ଣ, ତଳାରାଶି ଚୂର୍ଣ୍ଣ ୧୫ ତୋଳା, ସର୍ବ ସମଷ୍ଟିର ସମାନ ଗୁଡ଼, ଗବ୍ୟଘୃତ ୬୦ ତୋଳା, ମହୁ ୧୦ ତୋଳା, ଏ ସମସ୍ତ ଉତ୍ତମ ଆଲୋଡ଼ନ କରି, ସ୍ନିଗ୍ଧଭାଣ୍ଡରେ ରଖିବ । ମାତ୍ରା—ଅର୍ଦ୍ଧତୋଳ, ଅନୁପାନ ଉଷ୍ଣଜଳ, ଏହାର ସେବନରେ ଯାବତୀୟ ମେହରୋଗ, ମେହ ଜନିତ ବାତ, ଆମବାତ, ସକଳ ପ୍ରକାର ବାତବ୍ୟାଧି, ଅଗ୍ନିମାନ୍ଦ୍ୟ, ଅର୍ଶ ଇତ୍ୟାଦିରୋଗ ଦୂର ହୁଏ ।

## ଭଲ୍ଲାତକାଦି ତୈଳ-

ତିଳତୈଳ ୪ ସେର, ଭୃଙ୍ଗରାଜ ରସ ୧୬ ସେର, କଲ୍କାର୍ଥ — ଭଲ୍ଲିଅ, ଅର୍ଶମୂଳ, ମରିଚ, ସୈନ୍ଧବଲବଣ, ବିଡ଼ଙ୍ଗ, ହଳଦୀ, ଦାରୁହଳଦୀ, ଚିତାମୂଳ ମିଳିତ ୧ ସେର, ପାକାର୍ଥ ଜଳ ୧୬ ସେର, ଏହି ତୈଳ ଯଥାବିଧି ପାକକରି ଲଗାଇଲେ ନାଡ଼ୀବ୍ରଣ, ବାତଶ୍ଳୈଷ୍ମିକ, ଅପଚୀ ଓ ବ୍ରଣ ଶାନ୍ତହୁଏ ।

## ଭାର୍ଗୀ ଗୁଡ଼-

ବ୍ରହ୍ମଯଷ୍ଠୀ ମୂଳ ୧୦୦ ପଳ, ଦଶମୂଳ ପ୍ରତ୍ୟେକ ୧୦ ପଳ, ହରଡ଼ା ୧୦୦ ଗୋଟି, ଜଳ ୧୧୬ ସେର, ଏସମସ୍ତ ଏକତ୍ର ପାକ କରିବ, ହରଡ଼ା ଗୁଡ଼ିକ କନାରେ ବାନ୍ଧି ପକାଇବ, ୨୯ ସେର ଜଳ ଅବଶିଷ୍ଟ ରଖି ଓହ୍ଲାଇବ । ପାକପରେ ଉକ୍ତ ହରଡ଼ା ସକଳର ମଞ୍ଜି ବାହାର କରିବ । ୧୦୦ ପଳ ପୁରୁଣାଗୁଡ଼ ଓ ଉପଯୁକ୍ତ କ୍ୱାଥସହ ହରଡ଼ା ଗୁଡ଼ିକୁ ପାକ କରିବ, ଘନହେଲେ ତ୍ରିକଟୁ, ଗୁଡ଼ତ୍ୱକ, ତେଜପତ୍ର, ଅଳାଇଚ, ପ୍ରତ୍ୟେକ ଚୂର୍ଣ୍ଣ ୧ ପଳ, ଯବକ୍ଷାର ୪ ତୋଳା ପ୍ରକ୍ଷେପ କରି ଉତ୍ତମ ଆଲୋଡ଼ନ କରି ଓହ୍ଲାଇବ । ଶୀତଳ ହେଲେ ଏଥିରେ ୬ ପଳ ମହୁ ମିଶାଇବ । ମାତ୍ରା—୧ ତୋଳା ଲେହ ଓ ଗୋଟିଏ ହରଡ଼ା । ଏହାର ସେବନରେ ସମସ୍ତ ପ୍ରକାର କାଶ, ଶ୍ୱାସ ଶାନ୍ତ ହୁଏ ।

## ଭାସ୍କର ଲବଣ-

ପିପ୍ପଳୀ, ପିପ୍ପଳୀମୂଳ, ଧନିଆ, କଳାଜୀରା, ସୈନ୍ଧବ, ଓ ବିଟ୍‌ଲବଣ, ତେଜପତ୍ର, ତାଲୀଶପତ୍ର, ନାଗେଶ୍ୱର, ପ୍ରତ୍ୟେକ ଚୂର୍ଣ୍ଣ, ୧୬ ତୋଳା, ସଚଳ ଲବଣ ୪ ତୋଳା, ମରିଚ, ଜୀରା, ଶୁଣ୍ଠୀ, ପ୍ରତ୍ୟେକ ୮ ତୋଳା,

ଗୁଡ଼ତ୍ୱକ, ଅଳାଇଚ, ପ୍ରତ୍ୟେକ ୪ ତୋଳା, କଳକଚ ଲବଣ ୧ ସେର, ଅମ୍ଳ ଦାଡ଼ିମ ବୀଜ ଅର୍ଦ୍ଧସେର, ଅମ୍ଳ ବେତସ ୧୬ ତୋଳା, ଏ ସମସ୍ତ ଏକତ୍ର ଚୂର୍ଣ୍ଣ କରିବ, ମାତ୍ରା—ଅର୍ଦ୍ଧତୋଳା, ଅନୁପାନ ଲେମ୍ବୁରସ । ଏହାର ସେବନରେ ଅଗ୍ନିମାନ୍ଦ୍ୟ, ଅମ୍ଳପିତ୍ତ, ଅଜୀର୍ଣ୍ଣ, ଶୂଳ ଆଧ୍ମାନ, ଗୁଳ୍ମ ଇତ୍ୟାଦି ରୋଗ ଶାନ୍ତ ହୁଏ ।

## ଭୁବନେଶ୍ୱର ରସ-

ହିଙ୍ଗୁଳ ସିନ୍ଦୂର, ଯୁଆଣୀ, ବେଲଶୁଣ୍ଠା, ଅଲଣ୍ଡୁ ଏସମସ୍ତ ସମଭାଗେ ଏକତ୍ର ଜଳସହ ମର୍ଦ୍ଦନ କରି କୋଳମଞ୍ଜୀ ପରି ବଟିକା କରିବ । ଏହା ପାଚକ ଓ ଇଷତ୍ ଧାରକ । ଅଜୀର୍ଣ୍ଣ ରୋଗରେ ଓ ସାଧାରଣ ଅତିସାରରେ ଏହା ଉତ୍କୃଷ୍ଟ ଫଳଦାୟକ ।

## ମକରଧ୍ୱଜ-

ବୃହତ୍ ଚନ୍ଦ୍ରୋଦୟ ମକର ଧ୍ୱଜ ଦେଖ ।

## ମଦନାନନ୍ଦ ମୋଦକ-

ସକଳ ପ୍ରକାର ରୋଗରେ ମୃତସଞ୍ଜୀବନୀ ତୁଲ୍ୟ ଔଷଧ ରାଜ। ଏହା ବ୍ୟବହାର କଲେ ଜରାଜୀର୍ଣ୍ଣ ଶରୀର ପୂର୍ଣ୍ଣ ଯୌବନରେ ପରିଣତ ହୁଏ । ଚିର ଦିନର ଧ୍ୱଜ ଭଙ୍ଗ ରୋଗ ଓ ନପୁଂସକତ୍ୱ ଦୂର ହୁଏ । ମନ୍ଦାଗ୍ନି ନଷ୍ଟ ହୁଏ । ଅନ୍ୟାନ୍ୟ ମୂତ୍ରରୋଗ, ଯକ୍ଷ୍ମାକାସ, ଶ୍ୱାସ, ଧାତୁଦୌର୍ବଲ୍ୟତା ଇନ୍ଦ୍ରିୟ ଶୈଥିଲ୍ୟ ପ୍ରମେହ, ସ୍ୱପ୍ନ ଦୋଷ ଶୁକ୍ର ତାରଲ୍ୟ ନଷ୍ଟହୋଇ ଆରୋଗ୍ୟ ହୁଏ । ମେଧା ଓ ସ୍ମୃତିଶକ୍ତି ବଢ଼େ । ଶରୀରର ପ୍ରତ୍ୟେକ ଅଙ୍ଗ ଅପୂର୍ବ ସୁକୁମାର ସୌନ୍ଦର୍ଯ୍ୟରେ ଫୁଟିଉଠେ । ସୁଖ ନିଦ୍ରା ହୁଏ । କୋଷ୍ଠ ପରିଷ୍କାର ହୁଏ । ଏହା ଅମର ବାଞ୍ଛିତ ରସାୟନ । ଅମୂର ବହୁବାର ପରୀକ୍ଷିତ ।

## ମଧ୍ୟମ ନାରାୟଣ ତୈଳ-

ତିଳତୈଳ ୧୬ ସେର, କ୍ୱାଥାର୍ଥ—ବେଲ ମୂଳଛାଲ, ଗନ୍ଧଣୀ ମୂଳ ଛାଲ, ଫାଙ୍ଗଣୀମୂଳଛାଲ, ପାଟଳୀମୂଳ ଛାଲ ,ପାଲଧୁଆ ଛାଲ, ପସାରୁଣୀ, ଅଶ୍ୱଗନ୍ଧା, ଭେଙ୍ଗୀ, ଅଙ୍କରାନ୍ତ, ବାଡ଼ିଅଳା, ନାଗବଳ, ଗୋଖରୁ, ସେତପୁରୁଣୀ, ପ୍ରତ୍ୟେକ ୮୦ ତୋଲ, ପାକାର୍ଥ ଜଳ ୨୫୬ ସେର, ପାକାନ୍ତେ ଶେଷ ୬୪ ସେର । କଲ୍କାର୍ଥ—ସଜମ୍ବ, ଦେବଦାରୁ, ଜଟମଂାସୀ, ଶୈଳଜ, ବଚ, ରକ୍ତଚନ୍ଦନ, ତଗରପାଦୁକା, କୁଡ଼, ଅଳାଇଚ, ଶାଲପର୍ଣ୍ଣୀ, ପୃଶ୍ନିପର୍ଣ୍ଣୀ, ମୁଦ୍ଗପର୍ଣ୍ଣୀ, ମାଷପର୍ଣ୍ଣୀ, ରାସ୍ନା, ଅଶ୍ୱଗନ୍ଧା, ସୈନ୍ଧବ, ପୁନର୍ନବା, ପ୍ରତ୍ୟେକ ୧୬ ତୋଲ, ଶତାବରୀ ରସ, ୧୬ ସେର, ଛାଗଦୁଗ୍ଧ ୬୪ ସେର, ଏହି ତୈଳ ଯଥାବିଧି ପାକକରି ଲଗାଇଲେ ସମସ୍ତପ୍ରକାର ବାତ ବ୍ୟାଧି, ଉନ୍ମାଦ, ଅପସ୍ମାର, ମୂର୍ଚ୍ଛା, ମସ୍ତିଷ୍କ ବିକୃତ, କଫଦୋଷ ଓ ପିତ୍ତଦୋଷ ଶାନ୍ତହୁଏ ।

## ମନ୍ମଥାଭ୍ରରସ-

ପାରଦ, ଗନ୍ଧକ, ଅଭ୍ର ପ୍ରତ୍ୟେକ ୪ ତୋଲା, କର୍ପୂର, ବଙ୍ଗ, ପ୍ରତ୍ୟେକ ୧ ତୋଲା, ତାମ୍ର ଅର୍ଦ୍ଧତୋଲା, ଲୌହ ୨ ତୋଲା, ମଶ୍ରା-ମଞ୍ଜୀ, ଜୀରା, ଭୁଇଁକଖାରୁ, ଶତାବରୀ, କୋଇଲେଖାମଞ୍ଜୀ, ବାଡ଼ିଅଳା, ବାଇଡ଼ଙ୍କ ମଞ୍ଜୀ, ଭୁଭୁଷୀ, ଜାଇପତ୍ରୀ, ଜାଇଫଳ, ଲବଙ୍ଗ, ଗଞ୍ଜାଇମଞ୍ଜୀ, ସେତଝୁଣା, ଯୁଆଣୀ ପ୍ରତ୍ୟେକ ଅର୍ଦ୍ଧତୋଲା ଏ ସମସ୍ତ ଏକତ୍ର ଜଳସହ ମର୍ଦ୍ଦନ କରି ୨ ରତି ପ୍ରମାଣେ ବଟିକା କରିବ । ଏଦ୍ୱାରା ସେବନରେ ଶୁକ୍ରମେହ, ଶିଶ୍ନ ଶୈଥିଲ୍ୟ, ଧ୍ୱଜଭଙ୍ଗ, ବୀର୍ଯ୍ୟକ୍ଷୀଣତା ଇତ୍ୟାଦି ଦୋଷ ଦୂର ହୁଏ ।



## ମହାଗନ୍ଧକ-

କର୍ଜ୍ଜଳୀ ୪ ତୋଳା ଜଳରେ ଗୋଳ ଲୌହ ପାତ୍ରରେ ଅଳ୍ପ ଗରମ କରିବ । ପରେ ଏହାସହ ଜାଇଫଳ, ଜାଇପତ୍ରୀ ଅଳାଇଚ, ବେଙ୍ଗୁନିଆଁ ପତ୍ର, ଲବଙ୍ଗ, ତମପତ୍ର, ପ୍ରତ୍ୟେକ ଚୂର୍ଣ୍ଣ ୨ ତୋଳା ମିଶାଇ ମର୍ଦ୍ଦନ କରିବ । ଏହାକୁ ଗୁଳାକରି କଦଳୀପତ୍ର ଗୁଡ଼ାଇ ପୁଟପାକ କରିବ । କଛି ଲାଲହେଲେ ଔଷଧ ବାହାର କରି ୨ ରତି ପ୍ରମାଣେ ବଟିକା କରିବ । ଶିଶୁମାନଙ୍କ ପକ୍ଷରେ ଅଜୀର୍ଣ୍ଣ ପ୍ରଭୃତି ସମସ୍ତ ରୋଗରେ ଏହା ବିଶେଷ ଉପକାରୀ ।

## ମହା ଚୈତସ ଘୃତ-

ଘୃତ ୪ ସେର, କ୍ୱାଥାର୍ଥ—ଛଣିମଞ୍ଜୀ, ଇନ୍ଦ୍ରୁଡ଼ିମୂଳ, ଏରଣ୍ଡ ମୂଳ, ଦଶମୂଳ ଶତାବର୍ଚ୍ଚ, ରାସ୍ନା, ପିପ୍ପଳୀ, ସଜନାମୂଳ ପ୍ରତ୍ୟେକ ୨ ପଳ, ପାକାର୍ଥ ଜଳ ୬୪ ସେର, ଶେଷ ୧୬ ସେର, କଳ୍କାର୍ଥ—ଭୂଇଁକଖାରୁ, ଯଠିମଧୁ, ମେଦା, ମହାମେଦା, କାକୋଲୀ, କ୍ଷୀରକାକୋଲୀ, ଚେନ, ଖଜୁରୀ, ଦ୍ରାକ୍ଷା, ଶତାବରୀ, ତାଳମୂଳୀ, ଗୋଖରୀ, ମିଳିତ ୧ ସେର, ଏହା ଯଥାବିଧି ପାକକରି ସେବନ କଲେ ସକଳ ପ୍ରକାର ଉନ୍ମାଦ, ଅପସ୍ମାର, ବାତବ୍ୟାଧି ଇତ୍ୟାଦି ଶାନ୍ତ ହୁଏ ।

## ମହାଦଶମୂଳ ତୈଳ-

ସର୍ଷପ ତୈଳ ୧୬ ସେର, କ୍ୱାଥାର୍ଥ—ଦଶମୂଳ ୧୨୪ ସେର, ଜଳ ୬୪ ସେର, ପାକାନ୍ତେ ଶେଷ ୧୬ ସେର, ଲେମ୍ବୁରସ, ୧୬ ସେର ଅଦାରସ ୧୬ ସେର, ଦୁଦୁରାରସ ୧୬ ସେର, କଳ୍କାର୍ଥ—ପିପ୍ପଳୀ, ଗୁଳୁଚି, ଦାରୁହଳଦୀ, ସନ୍ଧ୍ୱପ, ପୁରୁଣୀମୂଳ, ସଜନାଛାଲ, କଟ୍କୀ,

କୋଚିଲା, କଲାଜୀରା, ଶୁକ୍ଳ ପୋଉଷ, ବଚ, ଶୁଣ୍ଠି, ଚିତାମୂଳ, ଗନ୍ଧଶୁଣ୍ଠି, ଦେବଦାରୁ, ବାଡ଼ିଅଁଳା, ରାସ୍ନା, କାଙ୍କଡ଼, ବେଗୁନିଆଁ ପତ୍ର, ଗୁଳୁଚି, ଗେରୁମାଟି, ପିପ୍ପଳୀମୂଳ, ଶୁଷ୍କମୂଳା, ଯୁଆଣି, ଜୀରା, କୁଡ଼, ଅଜମୋଦା, ମଣ୍ଡାମୂଳ, ପ୍ରତ୍ୟେକ ୮ ତୋଳା ଏହି ତୈଳ ଯଥାବିଧି ପାକକରି ଶିରରେ ଓ ପୀଡ଼ିତ ସ୍ଥାନରେ ମାଲିସ୍ କଲେ ସମସ୍ତ ପ୍ରକାର ଶିରୋ ବେଦନା, ଶ୍ଳୈଷ୍ମିକ ରୋଗ, ନାନା ପ୍ରକାର ବ୍ୟଥା ପ୍ରଭୃତି ବ୍ୟାଧି ପ୍ରଭୃତି ପ୍ରଶମିତ ହୁଏ ।

## ମହାମାଷ ତୈଳ-

ତିଳତୈଳ ୪ ସେର, କ୍ୱାଥାର୍ଥ—ସ୍ଥୂଳ ପୋଟଳୀ ବଦ୍ଧ ବିରି ୪ ସେର, ଦଶମୂଳ ମିଳିତ ୬। ସେର, ସ୍ଥୂଳ ପୋଟଳୀବଦ୍ଧ ଛାଗମାଂସ ୩୦ ପଳ ଏହି ସମସ୍ତ ଏକତ୍ର ୬୪ ସେର ଜଳରେ ପାକକରି ୧୬ ସେର ଅବଶିଷ୍ଟ ରଖି ଓହ୍ଲାଇବ । ଦୁଗ୍ଧ ୧୬ ସେର, କଲ୍କାର୍ଥ—ବାଇଡ଼ଙ୍କ ମଞ୍ଜି, କାଲମୂଳ, ସନ୍ଧପ, ସୈନ୍ଧବ, ବିଟ ଓ ସଚଳ ଲବଣ, ଜୀବନୀୟବର୍ଗ, ମଞ୍ଜିଷ୍ଠା, ଗୁଳୁଚି, ଚିତାମୂଳ, କାଙ୍କଡ଼, ତ୍ରିକଟୁ, ପିପ୍ପଳୀମୂଳ, ରାସ୍ନା, ଯଠିମଧୁ, ସୈନ୍ଧବ, ଦେବଦାରୁ, ଗୁଳୁଚି, କୁଡ଼, ବଚ ଅଶ୍ୱଗନ୍ଧା, ଗନ୍ଧଶୁଣ୍ଠି, ପ୍ରତ୍ୟେକ ୨ ତୋଳା, ଏହି ତୈଳ ଯଥାବିଧି ପାକ କରି ଲଗାଇଲେ ପକ୍ଷାଘାତ, ଅର୍ଦ୍ଦିତ, ବଧିରତା, ହନୁଗ୍ରହ, କର୍ଣ୍ଣଶୂଳ, ହସ୍ତପଦାଦିର କମ୍ପ, ଗୃଧ୍ରସୀ ଅବବାହୁକ ଇତ୍ୟାଦି ବାତ ବିକାର ପ୍ରଶମିତ ହୁଏ ।

## ମାଣିକ୍ୟ ରସ-

ହରିତାଳ ୧ ପଳ, ଗନ୍ଧକ ୧ ପଳ, ମନଶିଳା ଅର୍ଦ୍ଧପଳ, ପାରଦ, ସୀସା, ତାମ୍ର, ଅଭ୍ର, ଲୌହ ପ୍ରତ୍ୟେକ ୧ ତୋଳା, ଏ ସମସ୍ତ ଏକତ୍ର

ବଟ କ୍ଷୀରରେ ମର୍ଦ୍ଦନ କରି ପରେ ୩ ଦିନ ନିମପତ୍ର କ୍ୱାଥରେ ଭାବନା ଦେଇ ଖରାରେ ଶୁଖାଇବ । ତାହାସହ ଗୁଳୁଚି, କୁରୁବଲ୍ଲ, ହିନ୍ତାଳ, ବାଇଡିଙ୍ଗ, ଦାସକେରଣ୍ଡା, ସଜନାଛାଲ, ମୁରା ମାଂସୀ, ଜୀରା, ବେଗୁନିଆ. କନିଅର ମୂଳ ଏ ସମସ୍ତର ଚୂର୍ଣ୍ଣ ପ୍ରତ୍ୟେକ ଅର୍ଦ୍ଧତୋଳା ମିଶାଇ ଗୋଟିଏ ଅଣ୍ଡା ମୃତ୍ତିକା ପାତ୍ରରେ ରଖି ଏହି ପାତ୍ରଟିକୁ ଛିଣ୍ଡାକନା ଓ କାଦୁଅ ଦ୍ୱାରା ଉତ୍ତମ ଲେପି ମୁଖରୁଦ୍ଧ କରି ରାତ୍ରିରେ ଗ୍ରାମ ବାହାରେ ଗଜପୁଟରେ ପାକ କରିବ । ପରେ ଔଷଧ ଗ୍ରହଣ କରି ୨ ରତି ମାତ୍ରାରେ ଘୃତସହ ସେବନ କରି ପଥ୍ୟରେ ରହିବ । ଏହା ସକଳ ପ୍ରକାର ଗଳିତଦଳିତ କୁଷ୍ଠର ପ୍ରଶମକ ଅଟେ ।

## ମେଥିମୋଦକ-

ତ୍ରିକଟୁ, ତ୍ରିଫଳା, ମୁଥା, ଜୀରା, କଳାଜୀରା, ଧନିଆ, କୁଡ଼, କାଫଡ଼, କକଡ଼ାଶୃଙ୍ଗୀ, ଯୁଆଣୀ, ସୈନ୍ଧବ, ବିଟଲୁଣ, ତାଳୀଶପତ୍ର, ନାଗେଶ୍ୱର, ତେଜପତ୍ର, ଗୁଡ଼ତ୍ୱକ, ଅଳାଇଚ, ଜାଇଫଳ, ଜାଇପତ୍ରୀ ଲବଙ୍ଗ, ମୁରାମାଂସୀ, କର୍ପୂର, ରକ୍ତଚନ୍ଦନ, ଏ ସମସ୍ତର ଚୂର୍ଣ୍ଣ ପ୍ରତ୍ୟେକ ସମଭାଗ, ସର୍ବ ସମଷ୍ଟିର ସମାନ ମେଥିଚୂର୍ଣ୍ଣ, ସକଳ ଚୂର୍ଣ୍ଣର ଦ୍ୱିଗୁଣ ଗୁଡ଼ ଉପଯୁକ୍ତ ଜଳଦେଇ ପାକ କରିବ । ପାକ ସମାପ୍ତ ହେଲେ କିଛି ଘୃତ ଓ ମଧୁ ମିଶାଇ ମୋଦକ ଗଢ଼ିବ । ମାତ୍ରା—ଅର୍ଦ୍ଧତୋଳା ଠାରୁ ଏକ ତୋଳା ପର୍ଯ୍ୟନ୍ତ ଏହା ଅଗ୍ନିକାରକ, ଗ୍ରହଣୀ ରୋଗ ପ୍ରଶମକ ଓ ସ୍ତ୍ରୀମାନଙ୍କର ଦେହର ଶୀତଳତା ସମ୍ପାଦକ ଓ ସ୍ତନ୍ୟବର୍ଦ୍ଧକ ।

## ମେହକୁଳାନ୍ତକ-

ହିଙ୍ଗୁଳ ୧ ଭାଗ ଓ କର୍ପୂର ୧ ଭାଗ, ଏକତ୍ର ଜଳରେ ମର୍ଦ୍ଦନ କରି ୩ ରତି ପ୍ରମାଣେ ବଟିକା କରିବ । ସକାଳେ ମଧ୍ୟାହ୍ନ ଓ

ସନ୍ଧ୍ୟାରେ ଏପରି ଦିନକେ ୩ ମାତ୍ରା କଣ୍ଟାକାରୀରସ ଓ ମଧୁସହ ସେବନ କରିବ । ଏହା ସମସ୍ତ ପ୍ରକାର ମେହର ଉତ୍କୃଷ୍ଟ ଔଷଧ ।

## ଯୋଗରାଜଗୁଗ୍ଗୁଲୁ

ଚିତାମୂଳ, ପିପ୍ପଳୀମୂଳ, ଯୁଆଣୀ କଳାଜୀରା, ବିଡ଼ଙ୍ଗ, କଚ୍ଚ, ଦେବଦାରୁ, ଗୁଳୁଚିକାଠ, ଅଳାଇଚ, ସୈନ୍ଧବ, କୁଡ଼, ରାସ୍ନା, ଗୋଖରା, ଧନିଆ, ତ୍ରିଫଳା, ମୁଥା, ତ୍ରିକଟୁ, ଗୁଡ଼ତ୍ୱକ, ଉଶୀର ବେଣା, ଯବକ୍ଷାର, ତାଲୀଶପତ୍ର, ତେଜପତ୍ର ଏ ସମସ୍ତର ଚୂର୍ଣ୍ଣ ପ୍ରତ୍ୟେକ ସମଭାଗ, ଚୂର୍ଣ୍ଣ ସମଷ୍ଟିର ସମାନ ଗୁଗ୍ଗୁଲୁକୁ ଘୃତରେ ମର୍ଦ୍ଦନକରି ପରେ ତାହାସହ ସମସ୍ତ ଚୂର୍ଣ୍ଣ ମିଶାଇ ଘୃତରେ ମର୍ଦ୍ଦନକରି ସ୍ନିଗ୍ଧଭାଣ୍ଡରେ ରଖିବ । ମାତ୍ରା– ଅର୍ଦ୍ଧତୋଳା ବା ସାମର୍ଥ୍ୟ ଅନୁସାରେ, ଅନୁପାନ ଉଷ୍ଣଜଳ ବା କାଞ୍ଜି, ଏହାର ସେବନରେ ଆମବାତ, ଉରୁସ୍ତମ୍ଭ, କୃମି, ଦୁଷ୍ଟବ୍ରଣ, ପ୍ଳୀହା ଓ ଅନ୍ୟାନ୍ୟ ଅନେକ ରୋଗ ଉପଶମିତ ହୁଏ ।

## ରସରାଜ–

ରସ ସିନ୍ଦୂର ୮ ତୋଳା, ଅଭ୍ର ୨ ତୋଳା, ସ୍ୱର୍ଣ୍ଣ ୧ ତୋଳା, ଏ ସମସ୍ତ ଘୃତକୁମାରୀ ରସରେ ମର୍ଦ୍ଦନ କରି ତାହାସହ ଲୌହ, ରୌପ୍ୟ, ବଙ୍ଗ, ଅଶ୍ୱଗନ୍ଧା, ଲବଙ୍ଗ, ଜାଇଫଳ, କ୍ଷୀରକାକୋଲୀ, ପ୍ରତ୍ୟେକ ଅର୍ଦ୍ଧତୋଳା ପରିମାଣେ ମିଶାଇ କାକମାଚୀର ରସରେ ମର୍ଦ୍ଦନ କରି ୫ ରତି ପ୍ରମାଣେ ବଟିକା କରିବ । ଏହାର ସେବନରେ ସମସ୍ତ ପ୍ରକାର ବାତ ବିକାର ଶାନ୍ତହୁଏ ।



## ରସେନ୍ଦ୍ରଗୁଡ଼ିକା-

ପାରା, ଗନ୍ଧକ, ଅଭ୍ର, ତାମ୍ର, ହରତାଳ, ଲୌହ, ବଚ୍ଛନାଭ, ମନଃଶିଳା, ସୁହାଗା, ଟାଙ୍ଗଣାଖଇ, ସାଚଷାର, କଳାଦୁଦୁରମଞ୍ଜୀ ପ୍ରତ୍ୟେକ ସମଭାଗ, ଏ ସମସ୍ତ ଏକତ୍ର ଜୟନ୍ତୀପତ୍ର, ଚିତ୍ରକମୂଳ, ମାଣକନ୍ଦା, ପଳାଶ ମୂଳ, ଓଲ, ନବାଙ୍କୁର, କେଶରିନ୍ଦ୍ରା, ଭୃଙ୍ଗରାଜ, ଅଦା, ବେଗୁନିଆ ଗିଲପତ୍ର, ଏମାନଙ୍କ ରସରେ ଓ ଗଞ୍ଜାଇପତ୍ରରସରେ ପ୍ରତ୍ୟେକରେ ଦଶେଲେଖେ ଭାବନାଦେଇ ୧ ରତି ପ୍ରମାଣେ ବଟିକା କରିବ । ଏହା କାଶ, ଶ୍ୱାସ, କ୍ଷୟ, ରାଜଯକ୍ଷ୍ମା, ରକ୍ତପିତ୍ତ ଇତ୍ୟାଦି ରୋଗର ଶ୍ରେଷ୍ଠ ମହୌଷଧ ।

## ରସୋନ ତୈଳ-

ତୈଳ ୪ ସେର, ରସଣ ୧୨୫ ସେର, ପାକାର୍ଥ ଜଳ ୬୪ ସେର, ପାକାନ୍ତେ ଶେଷ ୧୬ ସେର, କଳ୍କାର୍ଥ—ତ୍ରିକଟୁ, ତ୍ରିଫଳା, ଦନ୍ତୀମଞ୍ଜୀ, ହିଙ୍ଗୁ, ସୈନ୍ଧବ, ଚିତାମୂଳ, ଦେବଦାରୁ, ବଚ, କୁଡ଼, ରଙ୍ଗସଜନା ଛାଲି, ପୁରୁଣି ମୂଳ, ସଚଳ ଲବଣ, ବିଡ଼ଙ୍ଗ, ଯୁଆଣୀ, ଗଜପିପ୍ପଳୀ, ପ୍ରତ୍ୟେକ ୧ ପଳ, ଭନ୍ଦୁଡ଼ମୂଳ ୭ ପଳ, ଏ ସମସ୍ତ ମୃଦୁ ଅଗ୍ନି ତାପରେ ଯଥାବିଧି ପାକକରି ଅଗ୍ନି ଓ ସାମର୍ଥ୍ୟ ଅନୁସାରେ ମାତ୍ରାସ୍ଥିର କରି ସେବନ କଲେ ସମସ୍ତ ପ୍ରକାର ଉଦରରୋଗ ପ୍ରଶମିତ ହୁଏ ।

## ରାମବାଣବଟିକା-

ପାରଦ, ମହୁରା, ଲବଙ୍ଗ, ଗନ୍ଧକ ପ୍ରତ୍ୟେକ ୧ ତୋଳା, ମରିଚ ୨ ତୋଳା, ଜାଇଫଳ ଅର୍ଦ୍ଧତୋଳା, ଏ ସମସ୍ତ କଣ୍ଟାକୟାଁ ରସରେ ଅଭାବ ପକ୍ଷେ କୟାଁପତ୍ର ରସରେ ମର୍ଦ୍ଦନ କରି ୧ ରତି ପ୍ରମାଣେ ବଟିକା

କରିବ । ଅନୁପାନ ଲେମ୍ବୁରସ ଅଥବା ରୋଗାନୁଯାୟୀ, ଏହାର ସେବନରେ ସମସ୍ତ ପ୍ରକାର ଅଜୀର୍ଣ୍ଣ, ଅଗ୍ନିମାନ୍ଦ୍ୟ ବିନଷ୍ଟ ହୁଏ ।

## ଲବଙ୍ଗାଦିବଟୀ-

ଲବଙ୍ଗ, ଶୁଣ୍ଠୀ, ମରିଚ, ଟାଙ୍କଣାଖଇ, ପ୍ରତ୍ୟେକ ଚୂର୍ଣ୍ଣ ସମଭାଗରେ ମିଶାଇ ଅପାମାର୍ଗ ଓ ଚିତାମୂଳ କ୍ୱାଥରେ ଭାବନା ଦେଇ ୧ ରତି ପ୍ରମାଣେ ବଟିକା କରିବ । ଅନୁପାନ ରୋଗାନୁସାରେ, ଏହା ଅଗ୍ନିଦୀପକ ।

## ଲକ୍ଷ୍ମୀବିଳାସ-

ଅଭ୍ର ୮ ତୋଳା, ପାରଦ, ଗନ୍ଧକ, କର୍ପୂର, ଜାଇପତ୍ରୀ, ପ୍ରତ୍ୟେକ ୪ ତୋଳା, ମଣ୍ଡୂମଞ୍ଜି, ଦୁଦୁରମଞ୍ଜି. ଗଞ୍ଜାଇମଞ୍ଜି, ଭୂଇଁକଖାରୁ, ଶତାବରୀ, ନାଗବଳା, ବାଡ଼ିଅଳା, ଗୋଖରା, ହେଞ୍ଜଲ ମଞ୍ଜି, ପ୍ରତ୍ୟେକ ୬ ତୋଳ ଏ ସମସ୍ତ ଏକତ୍ର ପାନରସରେ ମର୍ଦ୍ଦନ କରି ୩ ରତି ପ୍ରମାଣେ ବଟିକା କରିବ । ଅନୁପାନ ବିଶେଷରେ ଏହା ସମସ୍ତ ପ୍ରକାର ଜ୍ୱର ଧାତୁକ୍ଷୟ ଓ ଅଗ୍ନିମାନ୍ଦ୍ୟ ହରଣ କରେ ।

## ଶଙ୍ଖବଟୀ-

ଶଙ୍ଖଭସ୍ମ, ପଞ୍ଚଲବଣ, ତେନ୍ତୁଳଛାଲି ଭସ୍ମ. ବିଷାର, ବିକଟୁ, ହିଙ୍ଗୁ, ମହୁରି, ପାରଦ, ଗନ୍ଧକ ଓ ଏସମସ୍ତ ସମଭାଗରେ ମିଶାଇ ଅପାମାର୍ଗ କ୍ୱାଥରେ, ଚିତାମୂଳ କ୍ୱାଥରେ, ଲେମ୍ବୁରସରେ, ଓ ଅନ୍ୟାନ୍ୟ ନାନା ପ୍ରକାର ଅମ୍ଳରସରେ ଏପରି ଭାବନା ଦେବ ଯେପରିକି ଔଷଧରେ ଅମ୍ଳରସ ଫୁଟି ଉଠିବ । ଏହି ଔଷଧସହ ଲୌହ ଓ ବଙ୍ଗ ମିଶିଲେ ମହାଶଙ୍ଖବଟୀ ହୁଏ । ମାତ୍ରା ୬ ରତି । ଅନୁପାନ —ଉଷ୍ଣଜଳ । ଏହା

ମାତ୍ରା—୨ରତି । ଅନୁପାନ--ଉଷ୍ଣଜଳ, ଏହା ଅଗ୍ନିମାନ୍ଦ୍ୟ, ଅଜୀର୍ଣ୍ଣଜ୍ୱର, ଗୁଳ୍ମ, ପାଣ୍ଡୁ, ଆନାହ, ଆଧ୍ମାନ, ଶୂଳ ଇତ୍ୟାଦି ରୋଗ ବିନାଶକରେ, ଅକଣ୍ଠ ଭୋଜନ କରି ଏଥିରୁ ଗୋଟିଏ ମାତ୍ରା ସେବନ କଲେ ସମସ୍ତ ଭକ୍ଷିତ ପଦାର୍ଥ ତତ୍କ୍ଷଣାତ୍ ଜୀର୍ଣ୍ଣ ହୋଇଯାଏ ।

## ଶିବାଘୃତ-

ଘୃତ ୪ ସେର, କ୍ୱାଥାର୍ଥ—ପୁରୁଷ ଶୃଗାଳର ମାଂସ ୬। ସେର, ଦଶମୂଳ ମିଳିତ ୬। ସେର, ଜଳ ୬୪ ସେର, ପାକାନ୍ତେ ଶେଷ ୧୬ ସେର, ଦୁଗ୍ଧ ୮ ସେର, କଳ୍କାର୍ଥ—ଯଠିମଧୁ, ମଞ୍ଜିଷ୍ଠା, କୁଡ଼, ରକ୍ତଚନ୍ଦନ, ପଦ୍ମକାଠ, ହରଡ଼ା, ବାହାଡ଼ା, ଅଁଳା, ଭେଜ, ତଗର ପାଦୁକା, ବିଡ଼ଙ୍ଗ, ଡ଼ାଳିମ୍ବମଞ୍ଜୀ, ଦେବଦାରୁ, ଦନ୍ତିମୂଳ, ରେଣୁକା, ତାଳୀଶପତ୍ର, ନାଗେଶ୍ୱର, ଶ୍ୟାମାଲତା, ଗୋଠକାଙ୍କୁଡ଼ ମୂଳ, ଶାଳପର୍ଣ୍ଣୀ, ପ୍ରିୟଙ୍ଗୁ, ମାଲତୀ ଫୁଲ, କାକୋଲୀ, କ୍ଷୀରକାକୋଲୀ, ନୀଳୋତ୍ପଳ, ହଳଦୀ, ଦାରୁହଳଦୀ, ଷାରବା, ମେଦା, ଅଳାଇଚ, ବଡ଼ ଅଳାଇଚ, ପୃଶ୍ନିପର୍ଣ୍ଣୀ ପ୍ରତ୍ୟେକ ୨ ତୋଳା, ଏହି ଘୃତ ଯଥା ବିଧାନେ ପାକକରି ପାନକଲେ ନାନାବିଧ ଉନ୍ମାଦ, ଅପସ୍ମାର, ବାତବ୍ୟାଧି, କାସ, ଶୋଷ, ଉରଃକ୍ଷତ ଓ ଅନ୍ୟାନ୍ୟ ଅନେକ ରୋଗ ପ୍ରଶମିତ ହୁଏ । ଏହାଦ୍ୱାରା ଶୁକ୍ର ଗାଢ଼ହୁଏ । ବୃଦ୍ଧର ମଧ୍ୟ ନବ ଯୌବନାବସ୍ଥା ଫୁଟିଉଠେ । ଏବଂ ବନ୍ଧ୍ୟା ସ୍ତ୍ରୀମାନେ ସବଳ ସନ୍ତାନ ପ୍ରସବ କରନ୍ତି ।

## ଶିଶୁକସ୍ତୁରୀ ମାତ୍ରା-

କସ୍ତୁରୀ ୧ ଭାଗ, ବଂଶଲୋଚନ ୨ ଭାଗ, ବଙ୍ଗଭସ୍ମ ୩ ଭାଗ, ଅଭ୍ରଭସ୍ମ ୪ ଭାଗ, ରସସିନ୍ଦୂର ୫ ଭାଗ, ଗୋରୋଚନା ୬ ଭାଗ,

ରସପାପୂଡ଼ ୨ ଭାଗ, ଏ ସମସ୍ତ ତୁଳସୀପତ୍ର ରସରେ ମର୍ଦ୍ଦନ କରି ମୁଗପରି ବଟିକା କରିବ । ଏହା ମାତୃସ୍ତନ୍ୟ ବା ଗବ୍ୟକ୍ଷୀରସହ ପିଆଇଲେ ଶିଶୁମାନଙ୍କର ସମସ୍ତ ପ୍ରକାର ବ୍ୟାଧି ଶାନ୍ତହୁଏ ।

## ଶିଶୁଚତୁର୍ଭଦ୍ରିକ

ସ୍ୱର୍ଣ୍ଣଭସ୍ମ, ଅଭ୍ରଭସ୍ମ, ରସସିନ୍ଦୂର, ବଙ୍ଗଭସ୍ମ, ଏସମସ୍ତ ଘିଅକୁଆଁରୀ ରସରେ ମର୍ଦ୍ଦନ କରି ମୁଗ ପରି ବଟିକା କରିବ, ଏହା ଅନୁପାନ ବିଶେଷରେ ଶିଶୁମାନଙ୍କର ସମସ୍ତ ପ୍ରକାର ରୋଗ ଶାନ୍ତକରେ ।

## ଶୁଣ୍ଠୀଖଣ୍ଡ-

ଶୁଣ୍ଠୀ ୮ ପଲ, ଘୃତ ୬୦ ପଲ, ଗବ୍ୟଦୁଗ୍ଧ ୮ ସେର, ଖଣ୍ଡ ୫୦ ପଲ, ତ୍ରିକଟୁ, ଅଲାଇଚ, ଗୁଡ଼ତ୍ୱକ, ତେଜପତ୍ର ପ୍ରତ୍ୟେକ ୧ ପଲ, ଏସକଳ ମୋଦକ ପାକ ବିଧାନରେ ପାକକରି ଅର୍ଦ୍ଧ ତୋଲାଠାରୁ ଏକ ତୋଲା ପର୍ଯ୍ୟନ୍ତ ମାତ୍ରାରେ ସେବନ କରିବ । ଏହା ପୁଷ୍ଟିକାରକ ଏବଂ ଶୂଳ, ଅମ୍ଳପିତ୍ତ, ଆଧ୍ମାନ, ଅଜୀର୍ଣ୍ଣ, ଗ୍ରହଣୀ ଇତ୍ୟାଦି ରୋଗ ନାଶକ । ଅମ୍ଳବାତର ଏହା ଶ୍ରେଷ୍ଠ ମହୌଷଧ ।

## ଶୁଷ୍କମୂଳାଦି ତୈଳ

ମୂର୍ଚ୍ଛିତ ତିଳତୈଳ ୪ ସେର, କଲ୍କାର୍ଥ—ଶୁଷ୍କମୂଳା, ପୁନର୍ନବା, ଦେବଦାରୁ, ରାସ୍ନା, ଶୁଣ୍ଠୀ ମିଳିତ ୧ ସେର, ପାକାର୍ଥଜଳ ୬୪ ସେର । ଏହି ତୈଳ ଯଥାବିଧି ପାକକରି ମର୍ଦ୍ଦନ କଲେ ବେଦନା ଯୁକ୍ତ ଶୋଥ ନିବାରିତ ହୁଏ ।

## ଶୂଳଗଜ କେଶରୀ

ଶୁଦ୍ଧପାରଦ ୨ ତୋଳା, ଶୁଦ୍ଧଗନ୍ଧକ ୪ ତୋଳା, ଉଭୟଙ୍କୁ କଜ୍ଜଳୀ କରି ଲେମ୍ବୁରସରେ ମର୍ଦ୍ଦନ କରି ତଦ୍ଦ୍ୱାରା ୬ ତୋଳା ପରିମିତ ତାମ୍ର ପାତ୍ରର ଅଭ୍ୟନ୍ତର ଭାଗ ଲେପନ କରିବ । ପରେ ଗୋଟିଏ ଭାଣ୍ଡ ମଧ୍ୟରେ ୮ ତୋଳା ଲବଣ ରଖି ତଦୁପରି ଏହି ତାମ୍ରପାତ୍ର ସ୍ଥାପନକରି ତାହାର ଉପରେ ୮ ତୋଳା ଲବଣ ରଖି ଭାଣ୍ଡର ମୁଖରୋଧ କରିବ । ଏହି ଭାଣ୍ଡଟିକୁ ଗଜପୁଟରେ ପାକ କରିବ । ଅନନ୍ତର ତାମ୍ରସମ୍ପୁଟ ବାହାର କରି ଚୂର୍ଣ୍ଣ କରିବ । ମାତ୍ରା—୨ ରତି ଅନୁପାନ ପାନରସ । ଔଷଧ ସେବନାନ୍ତେ ହିଙ୍ଗୁ, ଶୁଣ୍ଠୀ, ଜୀରା, ବଚ, ମରିଚ ଏ ସମସ୍ତର ସମଭାଗ ଚୂର୍ଣ୍ଣ ୨ ତୋଳା ଉଷ୍ଣଜଳସହ ସେବନ କରିବ । ଏହା ଦ୍ୱାରା ସମସ୍ତ ପ୍ରକାର ସାଧ୍ୟାସାଧ୍ୟ ଉପଦ୍ରବଯୁକ୍ତ ଶୂଳ ଆଶୁ ନିବାରିତ ହୁଏ ।

## ଶୋଥଶାର୍ଦ୍ଦୂଳ ତୈଳ

କଟୁତୈଳ ୪ ସେର, କ୍ୱାଥାର୍ଥ—ଦୁଦୁରା, ଦଶମୂଳ, ବେଗୁନିଆ, ଜୟନ୍ତୀ, ପୁନର୍ନବା, କରଞ୍ଜ ମିଳିତ ୮ ସେର, ପାକାର୍ଥ ଜଳ ୬୪ ସେର, ଶେଷ ୧୬ ସେର, କଲ୍କାର୍ଥ—ରାସ୍ନା, ପୁନର୍ନବା, ଦେବଦାରୁ, ଶୁଷ୍କମୂଳା, ଶୁଣ୍ଠୀ, ପିପ୍ପଳୀ ସମସ୍ତମିଳିତ ୧ ସେର, ଯଥାବିଧି ପାକକରି ଏହି ତୈଳ ସେବନ କଲେ ଓ ମାଲିସ୍ କଲେ ସୁଦାରୁଣ ଶୋଥ ଓ ଶ୍ଳୀପଦ ଜ୍ୱର, ପାଣ୍ଡୁ, କ୍ରିମି, ଇତ୍ୟାଦି ରୋଗ ଦୂରହୁଏ ।

## ଶ୍ୱାସ କାସ ଚିନ୍ତାମଣି

ଲୌହଭସ୍ମ ୪ ତୋଳା, ଗନ୍ଧକ ୨ ତୋଳା, ଅଭ୍ରଭସ୍ମ ୨ ତୋଳା, ପାରଦ ୧ ତୋଳା, ସ୍ୱର୍ଣ୍ଣମାକ୍ଷିକ ୧ ତୋଳା, ମୁକ୍ତାଭସ୍ମ ଅର୍ଦ୍ଧତୋଳା,

ଏ ସମସ୍ତ ଏକତ୍ର ଭେଜା ରସରେ, ଅଦାରସରେ, ଛାଗ ଦୁଗ୍ଧରେ ଓ ଯାଠିମଧୁ କ୍ୱାଥରେ ପୃଥକ୍ ୨ ଭାବନା ଦେଇ ୪ ରତି ପ୍ରମାଣେ ବଟିକା କରିବ। ଅନୁପାନ ମଧୁ ଓ ବାହାଡ଼ା ଚୂର୍ଣ୍ଣ। ଏହା ଶ୍ୱାସ, କାଶ, ଯକ୍ଷ୍ମା, ଉରଃକ୍ଷତ ଇତ୍ୟାଦି ରୋଗରେ ଅବ୍ୟର୍ଥ ମହୌଷଧ।

## ଶ୍ୱାସକୁଠାର-

ରସ, ଗନ୍ଧକ, ବିଷ, ଟାଙ୍ଗଣାଖଇ, ମନଃଶିଳା, ମରିଚ, ତ୍ରିକଟୁ ଏସମସ୍ତ ସମଭାଗରେ ଏକତ୍ର ଜଳସହ ମର୍ଦ୍ଦନ କରି ୧ ରତି ପ୍ରମାଣେ ବଟିକା କରିବ। ଅନୁପାନ—ଅଦାରସ। ଏହା ବାତ ଶ୍ଳେଷ୍ମ ଜନିତ ଶ୍ୱାସ, କାସର, ପ୍ରଧାନ ଔଷଧ।

## ସପ୍ତାଙ୍ଗଗୁଗ୍ଗୁଳୁ-

ବିଡ଼ଙ୍ଗ, ତ୍ରିଫଳା, ତ୍ରିକଟୁ ପ୍ରତ୍ୟେକ ୨ ତୋଳା, ଗୁଗ୍ଗୁଳୁ ୧୪ ତୋଳା, ଏ ସମସ୍ତ ଘୃତସହ ମର୍ଦ୍ଦନକରି ସ୍ନିଗ୍ଧଭାଣ୍ଡରେ ରଖିବ। ଅଗ୍ନିବଳାନୁସାରେ ୧ ତୋଳା ମାତ୍ରାରେ ସେବନକରି ଉଷ୍ଣ ଜଳପାନ କରିବ। ଏହାର ସେବନରେ ଦୁଷ୍ଟବ୍ରଣ, ଅର୍ଶ, ମେହ ପ୍ରଭୃତି ବିନାଶ ହୁଏ।

## ସମଶର୍କର ଲୌହ

ଲୌହ ୪ ତୋଳା, ଛାଗଦୁଗ୍ଧ ୧୬ ତୋଳା, ଘୃତ ୮ ତୋଳା, ଚିନି ୪ ତୋଳା ଏ ସମସ୍ତ ଏକତ୍ର ତାମ୍ର ପାତ୍ରରେ ପାକକରି ବିଡ଼ଙ୍ଗ ଚୂର୍ଣ୍ଣ ୧ ତୋଳା ପ୍ରକ୍ଷେପ କରିବ, ଶୀତଳ ହେଲେ ମଧୁ ୪ ତୋଳା ମିଶାଇ ଘୃତସ୍ନିଗ୍ଧ ଭାଣ୍ଡରେ ରଖିବ। ମାତ୍ରା—୧ ମଷା ଠାରୁ ଅର୍ଦ୍ଧତୋଳା ପର୍ଯ୍ୟନ୍ତ। ଅନୁପାନ—ନାରିକେଳଜଳ, ଅଥବା ରୋଗର ଅବସ୍ଥାନୁସାରେ,

ଏହିଲୌହ ସେବନରେ ତୀବ୍ରରକ୍ତପିତ୍ତ, ଅମ୍ଳପିତ୍ତ, କ୍ଷତ, କ୍ଷୟରୋଗ ଇତ୍ୟାଦି ପ୍ରଶମିତ ହୁଏ ।

## ହିତାମଣ୍ଡୂର-

ମଣ୍ଡୂର ଅଗ୍ନିରେ ଦଗ୍ଧକରି କ୍ରମଶଃ ସାତବାର ଗୋମୂତ୍ରରେ ନିକ୍ଷେପକରି ଶୋଧନ କରିବ । ପରେ ଖରାରେ ଶୁଖାଇ ଉତ୍ତମ ରୂପେ ଚୂର୍ଣ୍ଣ କରିବ; ଏହି ଚୂର୍ଣ୍ଣିତ ମଣ୍ଡୂର ୧୦ ପଲ, ଚେନା ୫ ପଲ, ପୁରାତନ ଘୃତ ୮ ପଲ, ଗବ୍ୟ ଦୁଗ୍ଧ ୧୬ ପଲ, ଏସମସ୍ତ ଲୌହକଟାହରେ ମୃଦୁ ଅଗ୍ନିରେ ପାକକରି ପାକ ସିଦ୍ଧହେଲେ ଓହ୍ଲାଇ ଅଳ୍ପ ଉଷ୍ଣ ଥାଉ ନିମ୍ନ ଲିଖିତ ଦ୍ରବ୍ୟ ସକଳ ପ୍ରକ୍ଷେପ କରିବ । ଯଥା—ତ୍ରିକଟୁ, ଯଠିମଧୁ, ଅଳାଇଚ, ଦୁରାଲଭା, ବିଡ଼ଙ୍ଗସାର, ତ୍ରିଫଳା, ଶୁଡ଼, ଲବଙ୍ଗ ପ୍ରତ୍ୟେକ ୬ ତୋଲା, ଶୀତଳ ହେଲେ ତହିଁରେ ମଧୁ ୬ ପଲ ମିଶାଇବ । ଆହାର ପୂର୍ବରେ ଏହା ସେବନୀୟ । ପ୍ରଥମରେ ଅର୍ଦ୍ଧତୋଲା ଠାରୁ ଆରମ୍ଭ କରି ୬ ତୋଲା ପର୍ଯ୍ୟନ୍ତ ମାତ୍ରା ବୃଦ୍ଧି କରିବା । ଅନୁପାନ—ଶୀତଳ ଦୁଗ୍ଧ । ଏହାର ସେବନରେ କଷ୍ଟସାଧ୍ୟ ଅମ୍ଳପିତ୍ତ ଓ ତଜ୍ଜନିତ ଶୂଳ, ବମନ, ଅନାହ, ପ୍ରମେହ ଇତ୍ୟାଦି ପ୍ରଶମିତ ହୁଏ ।

## ସିଂହନାଦ ଗୁଗ୍ଗୁଳ

ହରଡ଼ା, ବାହାଡ଼ା, ଅଁଳା ଏ ସମସ୍ତର କ୍ୱାଥ ୩ ପଲ, ଶୋଧିତ ଗନ୍ଧକ ଚୂର୍ଣ୍ଣ ୧ ପଲ, ଗୁଗ୍ଗୁଳୁ ୧ ପଲ, ଏରଣ୍ଡ ତୈଳ ଅର୍ଦ୍ଧସେର ଗୋଟିଏ ଦୃଢ଼ ଲୌହ ପାତ୍ରରେ ପ୍ରଥମରେ ଏରଣ୍ଡ ତୈଳସହ ଗନ୍ଧକ ଚୂର୍ଣ୍ଣ ଓ ଗୁଗ୍ଗୁଳୁ ପାକକରି ପରେ ତ୍ରିଫଳାର କ୍ୱାଥ ଦେଇ ଆଲୋଡ଼ିତ କରିବ । ଏହି ଔଷଧ ସେବନ କଲେ ବାତପିତ୍ତଶ୍ଳେଷ୍ମା, ଖଞ୍ଜତା

ପଙ୍ଗୁତା, ଶ୍ୱାସ, ପଞ୍ଚବିଧ କାଶ, କୁଷ୍ଠ, ବାତରକ୍ତ, ଗୁଳ୍ମ, ଶୂଳ, ଉଦରଆମ, -ବାତ ଇତ୍ୟାଦି ନିବାରିତ ହୁଏ । ଏହା ନିୟମିତ ସେବନ କଲେ ଘୃତ ତୈଳ ବସାଯୁକ୍ତ ଶାଳିତଣ୍ଡୁଳ ଅନ୍ନ ପଥ୍ୟ କରିବ । ମାତ୍ରା—୨ଅଣା ଠାରୁ ୨ ତୋଳା ପର୍ଯ୍ୟନ୍ତ ସାତ୍ମ୍ୟ ଅନୁସାରେ ।

## ସୁବର୍ଣ୍ଣ ପୁଷ୍ପ ଶୁଗରସ-

ସ୍ୱର୍ଣ୍ଣଭସ୍ମ, ରସସିନ୍ଦୂର, ପିପ୍ପଳୀ, ଲବଙ୍ଗ, ଜାଇଫଳ, ଜାଇପତ୍ରି, ଅଳାଇଚ, ମାଲୋପ୍ରୂଳକନ୍ଦା, ଲୌହଭସ୍ମ, ବଙ୍ଗଭସ୍ମ, ନାଗଭସ୍ମ, କସ୍ତୁରୀ, ଅଭ୍ରଭସ୍ମ, ପ୍ରବାଳଭସ୍ମ, ମୁକ୍ତାଭସ୍ମ, ପ୍ରତ୍ୟେକ ୧ ଭାଗ, କର୍ପୂର ୨ ଭାଗ ୧ସମସ୍ତ ଏକତ୍ର ପାନରସ, ତୁଳସୀପତ୍ର ରସ, ଜାଇପତ୍ରୀସ୍ୱରସ ଏହି ପ୍ରତ୍ୟେକରେ ଦିନେଲେଖେ ମର୍ଦ୍ଦନକରି ୧ ରତି ପ୍ରମାଣେ ବଟିକା କରିବ । ଅନୁପାନ ବିଶେଷରେ ଏହା ସମସ୍ତ ରୋଗ ନାଶକ, ବିଶେଷରେ, କାସ, ଶ୍ୱାସ, ଅଗ୍ନିମାନ୍ୟ, ପ୍ରମେହ ଇତ୍ୟାଦିରେ ମହୋପକାରକ ।

## ସୋମନାଥରସ-

ଜାରିତ ଲୌହ ୨ ତୋଳା, ପାରଦ, ଗନ୍ଧକ, ଅଳାଇଚ ତେଜପତ୍ର, ହଳଦୀ, ଦାରୁହଳଦୀ, ଉଶୀରବେଣା, ଗୋଖରୀ, ବିଡ଼ଙ୍ଗ, ଜୀରା, ଅକାନବିନ୍ଧ, ଅଁଳା, ଡ଼ାଳିମ୍ବମଞ୍ଜୀ, ମାଙ୍ଗଣାଖାଇ, ଶୁକ୍ଳ ଚନ୍ଦନ, ଗୁଗ୍ଗୁଳୁ, ଲୋଧ, ଶାଳୁଅମଞ୍ଜୀ, ଅର୍ଜ୍ଜୁନଛାଲି, ଜାମଛାଲି, ରସାଞ୍ଜନ ପ୍ରତ୍ୟେକ ୧ ତୋଳା, ଏସମସ୍ତ ଏକତ୍ର ଛାଗ ଦୁଗ୍ଧରେ ପେଷଣ କରି ୩ ରତି ପ୍ରମାଣେ ବଟିକା କରିବ । ଏହାର ସେବନରେ ସୋମରୋଗ ପ୍ରଦର, ଯୋନିଶୂଳ, ନେତ୍ରଶୂଳ, ବହୁମୂତ୍ର, ମେହ, ଇତ୍ୟାଦି, ଆରୋଗ୍ୟ ହୁଏ ।



## ସୈନ୍ଧବାଦି ତୈଳ-

ତିଳ ତୈଳ ୪ ସେର, କାଞ୍ଜି ୩୨ ସେର, ସୈନ୍ଧବ ୨ ପଲ, ଶୁଣ୍ଠି ୫ ପଲ, ପିପ୍ପଳୀମୂଳ ୨ ପଲ, ଚିତାମୂଳ ୨ ପଲ, ଭାଲିଆ ୨୦ ଟି— ଏସମସ୍ତ ଯଥାକ୍ରମେ ପାକକରି ମର୍ଦ୍ଦନ କଲେ ଗୃଧ୍ରସୀ ପ୍ରଭୃତି ଦାରୁଣ ବାତବ୍ୟାଧି ପ୍ରଶମିତ ହୁଏ ।

## ହରିତକୀଖଣ୍ଡ-

ତ୍ରିଫଳା, ମୁଥା, ଗୁଡ଼ତ୍ୱକ, ତେଜପତ୍ର, ଅଳାଇଚ, ନାଗେଶ୍ୱର, ଯୁଆଣୀ, ତ୍ରିକଟୁ, ଧନିଆ, ପାନମହୁରୀ, ସନ୍ତ୍ରୁପ, ଲବଙ୍ଗ ପ୍ରତ୍ୟେକ ୨ ତୋଳା, ଭଙ୍ଗୁଡ଼ୀ ମୂଳ, ସୁନାମାଖୀ, ହରିଡ଼ା ପ୍ରତ୍ୟେକ ୧୬ ତୋଳା ଚିନି ୪ସେର, ଏସମସ୍ତ ମୋଦକ ବିଧାନରେ ପାକକରି ୧ ତୋଳା ପରିମାଣେ ମାତ୍ରା କରିବ । ଏହାର ସେବନରେ ସୁଖବିରେଚନ ହୁଏ । ଏବଂ ମଳବଦ୍ଧ ଦୋଷଜନିତ ସମସ୍ତ ରୋଗ ଦୂର ହୁଏ ଓ ଅଗ୍ନି ଦୀପ୍ତି ହୁଏ ।

## ହିଙ୍ଗ୍ୱଷ୍ଟକଚୂର୍ଣ୍ଣ-

ତ୍ରିକଟୁ, ଯୁଆଣୀ, ସୈନ୍ଧବ, ଜୀରା, କଳାଜୀରା, ହେଙ୍ଗୁ, ଏସମସ୍ତ ସମଭାଗରେ ଏକତ୍ର ଚୂର୍ଣ୍ଣକରି ଏକ ତୋଳା ମାତ୍ରାରେ ଉଷ୍ଣ ଜଳସହ ସେବନ କଲେ ସମସ୍ତ ପ୍ରକାର ଅଜୀର୍ଣ୍ଣ, ଅଧ୍ମାନ ଓ ଶୂଳ ବିନଷ୍ଟ ହୁଏ ।



## ହିମସାଗରତୈଳ-

ତିଳତୈଳ, ଶତାବରୀରସ, ଭୁଇଁକଖାରୁରସ, କଖାରୁପାଣି, ଅଁଳାରସ, ମୂଳରସ, ଗୋଖରୁରସ, ପଶରଡ଼ପାଣି, କଦଳୀମୂଳରସ, ପ୍ରତ୍ୟେକ ୪ ସେର, ଦୁଗ୍ଧ ୧୬ ସେର, କଲ୍କାର୍ଥ—ରକ୍ତଚନ୍ଦନ, ତଗର ପାଦୁକା, କୁଡ଼, ମଞ୍ଜିଷ୍ଠା, ସରଳକାଠ, ଅଗୁରୁ, ଜଟାମାଂସୀ, ମୁରାମାଂସୀ, ଶୈଳଜ, ଯଷ୍ଠିମଧୁ, ଦେବଦାରୁ, ନଖୀ, ହରଡ଼ା, ଖଣ୍ଠାଣୀ, ପିଡ଼ଂଶାକ, ଲୁନ୍‌ଖୋଷ୍ଟ, ନାଲୁକା, ଶତାବରୀ, ଲୋଧକାଠ, ମୁଥା, ଗୁଡ଼ତ୍ୱକ୍, ଅଳାଇଚ, ତେଜପତ୍ର, ନାଗେଶ୍ୱର, ଲବଙ୍ଗ, ଜାଇପତ୍ରୀ, ପାନମହୁରୀ, ଗନ୍ଧଶୁଣ୍ଠୀ, ଶ୍ୱେତଚନ୍ଦନ, ଗଣ୍ଡିଅଳା, କର୍ପୂର, ପ୍ରତ୍ୟେକ ୬ ତୋଳା, ଏହି ତୈଳ ଯଥାବିଧାନେ ପାକକରି ମାଲିସ୍ କଲେ ସମସ୍ତ ପ୍ରକାର ବାତବେଗ, ଶିରୋବେଦନା, ଅନିଦ୍ରା, ବହୁମୂତ୍ର, ମସ୍ତିଷ୍କ ବିକୃତ, ମୃଗୀ ହିଷ୍ଟିରିଆ ଇତ୍ୟାଦି ରୋଗ ଶାନ୍ତହୁଏ ।

## କ୍ଷୁଧାବତୀଗୁଡ଼ିକା-

ପାରଦ, ଗନ୍ଧକ, ଲୌହ, ଅଭ୍ର, ତ୍ରିକଟୁ, ତ୍ରିଫଳା, ବଚ, ଯୁଆଣୀ, ସତ୍ତ୍ୱପ, ଗୁଇଁକାଠ, ଜୀରା, କଳାଜୀରା ପ୍ରତ୍ୟେକ ୮ ତୋଳା, ପୁରୁଣୀ ମୂଳ, ପିପ୍ପଳୀମୂଳ, ଇନ୍ଦ୍ରଯବ, କେଶରାଜ, ଗୁଳୁଚୀ, ଚହୁଡ଼ ମୂଳ, ଦନ୍ତୀମୂଳ, ଅପରାଜିତାମୂଳ, ରକ୍ତଚନ୍ଦନ, ଭୃଙ୍ଗରାଜ, ଅପାମାର୍ଗମୂଳ, ପଟୋଳପତ୍ର, ମଣ୍ଡୂକପର୍ଣ୍ଣୀ ପ୍ରତ୍ୟେକ ୪ ତୋଳା. ଏ ସମସ୍ତ ଅଦାରସରେ ମର୍ଦ୍ଦନକରି କୋଳମଞ୍ଜିପରି ବଟିକା କରିବ । ଅନୁପାନ—ଲାଙ୍କୁପାଣି । ଅଜୀର୍ଣ୍ଣ, ଅଗ୍ନିମାନ୍ଦ୍ୟ, ଅକ୍ଷୁଧା, ଅରୁଚି, ଅମ୍ଳପିତ୍ତ ଇତ୍ୟାଦି ରୋଗରେ

ଏହା ଅବ୍ୟର୍ଥ ମହୌଷଧ, ପେଟ ଫୂଲା, ଦୁର୍ଗନ୍ଧ ଓଡ଼ା, ତରଳଭେଦ, ପେଟବ୍ୟଥା ଇତ୍ୟାଦି ଉପଦ୍ରବଯୁକ୍ତ ଅଜୀର୍ଣ୍ଣକୁ ଏହା ଧ୍ୱଂସ କରେ । ଆହାର ପୂର୍ବରେ ଏହା ସେବନ କଲେ ସଦ୍ୟଃ କ୍ଷୁଧା ଜାତ ହୁଏ । ଆହାର ପରେ ସେବନ କଲେ ଭୁକ୍ତଦ୍ରବ୍ୟ ଅନାୟାସେ ଅଳ୍ପସମୟରେ ଜୀର୍ଣ୍ଣ ହୋଇ ଯାଏ ।




ବ୍ରହ୍ମପୁର ଶାରଦା ପ୍ରେସ୍‌ରେ ଶ୍ରୀ ଶ୍ୟାମସୁନ୍ଦର ପାଢ଼ୀଙ୍କ ଦ୍ୱାରା ମୁଦ୍ରିତ
୧୯୩୫

